# ମିଲୁର ଗପ ଲେଖା

ଲେଖିକା :
**ନିର୍ମଳା ମହାନ୍ତି**
ଭୁବନେଶ୍ୱର

ପ୍ରକାଶକ :
**ଓଁ ବୁକ୍ ଡିପୋ**
ବାଲୁବଜାର, କଟକ-୭୫୩ ୦୦୨

ପ୍ରଥମ ପ୍ରକାଶ : ୧୯୮୯
ପୁନର୍ମୁଦ୍ରଣ : ୧୯୯୧

ମୁଦ୍ରଣ :
**ସପ୍ତର୍ଷି ପ୍ରିଣ୍ଟର୍ସ**
ମଧୁପାଟଣା, କଟକ-୧୦

ମୂଲ୍ୟ—**ପାଞ୍ଚଟଙ୍କା ମାତ୍ର**

**MILURA GAPA LEKHA**

By :
**Nirmala Mohanty**
Bhubaneswar

Published by :
**Om Book Depot**
Balu Bazar
Cuttack-753 002

First Edition : 1989
Re-Print : 1991
Printed at :
**Saptarshi Printers**
Madhupatna, Cuttack-10

Price :
**Rs. 5-00**

# ସୂଚୀପତ୍ର

| ବିଷୟ | ପୃଷ୍ଠା |
|---|---|
| ୧ । ମା | ୧ |
| ୨ । ମିଲୁର ଗପ ଲେଖା | ୬ |
| ୩ । ବବୁନ୍‌ର ବୁଦ୍ଧି | ୯ |
| ୪ । ଖେଳୁଆଡ଼ ଟିଂଟୁ | ୧୩ |
| ୫ । କୁନଚଝକର | ୧୭ |
| ୬ । ମାଗିଖିଆଠାରୁ ଲାଗିଖିଆ ଭଲ | ୨୨ |
| ୭ । ସୁନାଝିଅ ଦେବୀ | ୨୭ |



# ମା

ବଣ ଜଙ୍ଗଲ ଘେରା ପାହାଡ଼ ତଳ ଗାଁଟିଏ । କେତେ ଅଜଣା ଫୁଲର ମହକରେ ବାରମାସଯାକ ମହକ ଉଠୁଥାଏ । ଧୀରେ ଧୀରେ ଗାଁ'ର ଆମ୍ବ, ନଡ଼ିଆ, ତାଳ, ଖଜୁରୀ ଗଛ ଲମ୍ବି ଯାଇଛି ଦୂରକୁ ଦୂରକୁ । କୁଳୁ କୁଳୁ ନାଦରେ ବହି ଯାଉଛି ଗୋଟିଆ ନଈଟି ଅନେକ କାଳରୁ ।

ସେଇ ଗାଁ'ର ଏକ ଗୋଟିଆ ଚାଷୀ ପରିବାରରେ ମିଠୁ ଓ ମିନୁର ଜନ୍ମ । ପିଲାଟି ଦିନରୁ ସେମାନଙ୍କୁ ଛାଡ଼ି ମା' ତାଙ୍କର କେଉଁ ଅଜଣା ଦେଶକୁ ଚାଲି ଯାଇଛନ୍ତି ସେକଥା ମିଠୁ ଓ ମିନୁକୁ ଜଣାନାହିଁ । ସେମାନେ ବାପାଙ୍କୁ କେବଳ ଦେଖି ଆସିଛନ୍ତି । ବାପା ହିଁ ତାଙ୍କର ସୁଖ ଦୁଃଖର ସାଥି । କେତେଥର ସେ ଦୁହେଁ ମା' କଥା ବାପାଙ୍କୁ ପଚାରିଛନ୍ତି । କିନ୍ତୁ ବାପା ସବୁ ଶୁଣି, ନ ଶୁଣିଲା ପରି ଚୁପ୍ ରହି ଯାଆନ୍ତି ଓ ଗମ୍ଭୀର ହୋଇ ପଡ଼ନ୍ତି ।

ରାତି ପାହେ, ସୂରୁଯ ଉଏଁ । ସକାଳର ସୁନେଲୀ କିରଣ ଯେତେବେଳେ ଗଛ ପତ୍ର ଦେହରେ ବିଛେଇ ହୋଇପଡ଼େ, ଭାଇ ଭଉଣୀ ଦୁହେଁ ନିତି ଦିନଆଁ କାମ ସାରି ଚାଟଶାଳୀକୁ ବାହାରି ପଡ଼ନ୍ତି ।

ବାପା ବାହାରନ୍ତି ବିଲକୁ, ଚାଷକାମ କରିବାପାଇଁ । ଭାଇ ଭଉଣୀ ଦୁହେଁ ମନ ଦେଇ ପଢ଼ାରେ ଲାଗି ଯାଆନ୍ତି । ଗୁରୁଜୀଙ୍କର ସବୁ କଥା ମାନନ୍ତି । କାହା ସଙ୍ଗରେ କଳିଗୋଳ କରନ୍ତି ନାହିଁ । କାହାର କେଉଁ ଜିନିଷରେ ଲୋଭ ନଥାଏ ତାଙ୍କର ।

ସଞ୍ଜ ନଇଁ ଆସେ; ସୂରୁଯ ଦେବତା ଧୀରେ ଧୀରେ ପାହାଡ଼ ପଛପଟେ ଲୁଚି ଯାଆନ୍ତି । ବଣ ପାହାଡ଼ରୁ ଅନ୍ଧାର ମାଡ଼ି ଆସେ । ଗାଈଆଳ ପିଲା ଗାଈପଲ ଧରି ଘରକୁ ବାହୁଡ଼େ । ବାହୁଡ଼ି ଆସନ୍ତି ଭାଇ ଭଉଣୀ ଦୁହେଁ ନିଜ ଘରକୁ । ମନଭିତରେ ଦୁହିଁଙ୍କର ଗୋଟିଏ ଦୁଃଖ । ଦିନ ଶେଷ ଘରେ ପହଞ୍ଚିଲା ବେଳକୁ ସେ କେମିତି ଗୋଟିଏ କଥାରେ ଅଭାବ ବୋଧ କରନ୍ତି । ତାଙ୍କର ପଢ଼ା ସାଥି ମୁନା, ଝୁନା, ପିଣ୍ଟୁ, ଲିଟୁ ସମସ୍ତଙ୍କ ଘର କେତେ ବଢ଼ିଆ ସତେ । ମା' ଅଛନ୍ତି ତାଙ୍କର । ଖେଳି ବୁଲି ଘରେ ପହଞ୍ଚିଲା ବେଳକୁ ବାଟ ଚାହିଁ ବସି ଥାଆନ୍ତି ମା' । ଜାମା ବଦଳେଇ ଦିଅନ୍ତି । ଗୋଡ଼ ହାତ ଧୋଇ କୋଳକୁ ନିଅନ୍ତି । ଝାଳ ପୋଛି ଦିଅନ୍ତି । ଦେହ ମୁଣ୍ଡ ଖରାପ ହେଲେ ପାଖେ ପାଖେ ଜଗି ରହି ଔଷଧ ଦିଅନ୍ତି ।



(ମିଟୁ ଓ ମିନୁଙ୍କ ଘର)

କୋଳରେ ବସେଇ ଖୁଆନ୍ତି । ମିଟୁ ମିନୁକୁ କିନ୍ତୁ ନିଜ କାମ ନିଜକୁ ହିଁ କରିବାକୁ ପଡ଼ିଥାଏ ।

ବାପା ତ କାମିକା ଲୋକ । ମୁଣ୍ଡ ଝାଳ ଗୋଡ଼ରେ ମାରି ଜମିରେ ନ ଖଟିଲେ ଖାଇବେ କେମିତି, ପିନ୍ଧିବେ କ'ଣ ? ମା' କଥା ଭାବିଲା ବେଳେ କାହ୍ନି କ ଦୁ'ଜଣଙ୍କର ଆଖି ଓଦା ହୋଇ ଆସେ । ମନ ଅଥୟ ହୁଏ ।

ଦିନେ ଭାଇ ଭଉଣୀ ଚଟିସାରୁ ଘରକୁ ଫେରିବା ବାଟରେ ଜଣେ ସାଧୁଙ୍କୁ ଦେଖିଲେ । ସାଧୁଜଣକ ଆଦର କରି ସେ ଦୁହିଁଙ୍କୁ ପାଖକୁ ଡାକିଲେ । ତାଙ୍କର ମମତା ଭରା କଥାରେ ପିଲା ଦୁହେଁ ଭୁଲି ଗଲେ । ନରମ ଗଳାରେ ସାଧୁଙ୍କୁ ମନକଥା ପଚାରିଲେ—ମହାଶୟ, ଆପଣ ତ ସବୁ କଥା ଜାଣି ପାରନ୍ତି । କହନ୍ତୁ ତ ସମସ୍ତଙ୍କର ମା' ଅଛନ୍ତି, ଆମ ମା' କେଉଁଠିକି ଯାଇଛନ୍ତି ଯେ, ଜମାରୁ ଆସୁ ନାହାନ୍ତି କି ଦିନେ ହେଲେ ଆମ କଥା ଭାବୁ ନାହାନ୍ତି । କିଛି ସମୟ ଆଖି ବୁଜି ଚିନ୍ତା କରିବା ପରେ ହସି ହସି ସାଧୁ କହିଲେ, ଓ ହୋ…ଏଇ କଥା ? ତୁମ ମା' ପରା ଦରିଆ ପାରି ବିଦେଶକୁ ଚାକିରି କରିବାପାଇଁ ଯାଇଛନ୍ତି ! ସେ ତୁମ କଥା ସବୁବେଳେ ଭାବୁଛନ୍ତି । କିନ୍ତୁ ସେ ସେଠାରେ କାମରେ ଏତେ ବ୍ୟସ୍ତ ଯେ କାମ ନ ସରିବା ଯାଏ ସେଠାରୁ ଫେରି ପାରିବେ ନାହିଁ । ତୁମେ ଦୁଇ ଜଣ ଯେତେବେଳେ ବହୁତ ପାଠ ପଢ଼ି ବଡ଼ ମଣିଷ ହେବ, ଜନମ ଭୂଇଁର ସେବାରେ ଓ ପର ଉପକାରରେ ନିଜକୁ ଲଗାଇ ଦେବ ଠିକ୍ ସେତିକି ବେଳେ ମା' ଆସି ପହଞ୍ଚି ଯିବେ । ତୁମପାଇଁ କେତେ ଜିନିଷ ଆଣିବେ ତା'ର ଠିକଣା ନାହିଁ । ତମ ମା' ସମସ୍ତଙ୍କ ମା'ଠାରୁ ଭିନ୍ନ । ବହୁତ ଭଲ ।

ସାଧୁଙ୍କ କଥାରେ ମିଟୁ ମିନୁଙ୍କର ଆଖି ବଡ଼ ବଡ଼ ହୋଇଗଲା । ଆରେ ସତେ ତ, ତା' ନ ହୋଇଥିଲେ ମା' ଆମର ବିଦେଶରେ ଚାକିରି କରନ୍ତେ କେମିତି ? ସେ ଆନନ୍ଦରେ କୁରୁଳି ଉଠି ଏକା ସାଙ୍ଗରେ କହି ଉଠିଲେ, ସତରେ ସାଧୁଜୀ, ଆମେ ଆଉ ଜମାରୁ ଦୁଃଖ କରିବୁ ନାହିଁ । ସାଧୁଙ୍କୁ ମୁଣ୍ଡିଆ ମାରି ମନ ଖୁସିରେ ଘରକୁ ଫେରିଲେ ଭାଇ ଭଉଣୀ ଦୁହେଁ । ସେଇଦିନଠାରୁ ଆଉ କିଛି ନ ଭାବି ପାଠ ପଢ଼ାରେ ଲାଗିଗଲେ । ନିଜ କାମ ନିଜେ କରିବା ସଙ୍ଗେ ସଙ୍ଗେ ବାପାଙ୍କୁ ମଧ୍ୟ କାମରେ ସାହାଯ୍ୟ କଲେ ।

କିଛି ଦିନ ପରେ ଦିନେ ମିଣ୍ଟୁ ସ୍ୱପ୍ନ ଦେଖିଲା—ସେ ଦୁହେଁ ବଡ଼ ହୋଇ ଯାଇଛନ୍ତି । ବହୁତ ପାଠ ପଢ଼ି ଭଲ ଭଲ କାମରେ ଲାଗି ପଡ଼ିଛନ୍ତି । ତାଙ୍କ ଘର ହସ ଖୁସିରେ ପୂରି ଉଠିଛି । ବିଦେଶରୁ ମା' କେତେ ଭଲ ଜିନିଷ, ନୂଆ ନୂଆ ଖେଳନା, ମଟର ଗାଡ଼ି, ପୋଷାକପତ୍ର ଆଣିଛନ୍ତି । ତାଙ୍କର ଆଜି କେଉଁଥିରେ ଅଭାବ ନାହିଁ । ନିଦ ଭାଙ୍ଗିଲା, ମିଣ୍ଟୁ ସବୁ କଥା ମିନୁକୁ କହିଲା । ସାଧୁଙ୍କ କଥା ମାନି ମିଣ୍ଟୁ ମିନୁ ପୁଣି ନିଜର ପଢ଼ା ଓ କାମରେ ଲାଗି ପଡ଼ିଲେ, ଆଗଠାରୁ ଆହୁରି ବେଶୀ ମନ ଲଗେଇ । କିଛି ଦିନ ପରେ ପୁଣି ସେଇ ସାଧୁ ଆସି ମିଣ୍ଟୁ, ମିନୁଙ୍କ ଘରେ ପହଞ୍ଚିଲେ । ମିଣ୍ଟୁ ଆଉ ମିନୁ ସାଧୁଙ୍କୁ ନମସ୍କାର କରି ବସିବାକୁ ଆସନ ଦେଲେ । ସାଧୁ ପଚାରିଲେ, କେମିତି ଅଛରେ ପିଲାଏ ?



(ମିଣ୍ଟୁ ଆଉ ମିନୁ ସାଧୁଙ୍କ ନିକଟରେ)

ମିଣ୍ଟୁ କହିଲା—ଭଲ ଅଛୁ । ହେଲେ, ମା' ଫେରି ନାହାନ୍ତି । ଏବେ ଆମେ ଜାଣୁଛୁ ଯେ ସେ ଦେଶକୁ ଯିଏ ଯାଏ, ସିଏ ଆଉ ଫେରେ ନାହିଁ । ସିଏ କୁଆଡ଼େ ଏକ ଅଜଣା ଓ ଅଣଲେଉଟା ଦେଶ ।

ମିଣ୍ଟୁର କଥା ଶୁଣି ସାଧୁ ଜାଣି ପାରିଲେ ଯେ ପିଲାଙ୍କୁ ଏଣିକି ଆଉ ଭୁଲେଇ ହେବ ନାହିଁ । ତାଙ୍କର ହେତୁ ହୋଇଗଲାଣି । ସେ ସବୁ କଥା ଜାଣି ପାରିଲେଣି । ତେଣୁ ସାଧୁ କହିଲେ—ଆରେ ବାବା, ସେଦିନ ମୁଁ ତୁମକୁ ଅସଲ କଥାଟି ନକହି ଭୁଲେଇ ଦବାକୁ ସେପରି କହିଥିଲି । ସେତେବେଳେ ତୁମେ ଖୁବ୍ ଛୋଟପିଲା ଥିଲ । ଅସଲ କଥାଟି କହିଥିଲେ, ତୁମ ମନ ଆହୁରି ଦୁଃଖ ହୋଇଥାନ୍ତା । ତୁମେ ମା'ଙ୍କୁ ଅଧିକ ଝୁରିହୋଇ ଦୁର୍ବଳ ହୋଇ ପଡ଼ିଥାନ୍ତ । ତୁମ ମନରେ ଦମ୍ଭ ଆଣିବାପାଇଁ ଓ ଆଶା, ଭରସା ଭରି ଦେବାପାଇଁ ମୁଁ ସେପରି କହିଥିଲି । ଏବେ ତୁମେ ସବୁକଥା ବୁଝି ନିଜକୁ ଗଢ଼ିବାକୁ ସକ୍ଷମ ହେଲଣି । ତେଣୁ ଅସଲ କଥାଟି ଜାଣିଲେ ବି ତୁମର ବିଶେଷ କ୍ଷତି ହେବନି । ହଉ, ତୁମେମାନେ ସୁଖରେ ଥାଅ । ମୁଁ ଯାଉଛି । ଏହା କହି ସାଧୁ ବିଦାୟ ନେଇ ଚାଲିଗଲେ ।



# ମିଲୁର ଗପ ଲେଖା

ସେଦିନ ହୋଇଥାଏ ରବିବାର । ହାଲ୍‌କା ମନରେ ପତ୍ରିକା ଖଣ୍ଡେ ଲେଉଟାଉ ଥିଲା ମିଲୁ । ସହସା ନଜର ପଡିଲା ଗୋଟିଏ ପୃଷ୍ଠାରେ । ଶିରୋନାମାଟି ହେଲା "ଚେଷ୍ଟା କଲେ ସବୁ ସାଧ୍ୟ ହୁଏ ।" ମନେ ମନେ ଭାବିଲା, ଆଜି ସେ ନିଶ୍ଚେ ଚେଷ୍ଟା କରି ଗୋଟିଏ ସୁନ୍ଦର ଗପ ଲେଖିବ ।

ଭାବି ବସିଲା, କ'ଣ ଲେଖିବ । ଧାଇଁଯାଇ କାଗଜ ଓ କଲମ ନେଇ ଆସିଲା, ତା'ପରେ ଭାବି ଚାଲିଲା ଆକାଶ ପାତାଳ··· । ଟିକ୍ ଟିକ୍ କରି ଆଲାରମଟିରେ ଏକ ଘଣ୍ଟା କଟିଗଲା । କିନ୍ତୁ ଫଳ କିଛି ହେଲା ନାହିଁ । ଏପର୍ଯ୍ୟନ୍ତ କାଗଜରେ ଗୋଟିଏ ଅକ୍ଷର ବି ସେ ଲେଖିପାରିଲା ନାହିଁ । ଖୁବ୍ ବିରକ୍ତ ଲାଗିଲା ତାକୁ । ଏ ଘରେ କିଛି ହେଲେ ବି କରି ହେବନି । ସବୁବେଳେ ପାଟିଗୁଣ୍ଡ କେଁ କାଁ । ବନ୍ଦ କଲା ରେଡ଼ିଓ, ବନ୍ଦ କଲା କବାଟ, ଝର୍କା । ସୁଇଚ୍ ଅନ୍ କରି ଲାଇଟ୍ ଜାଳିଲା, ତା'ପରେ ଘର ଭିତରେ ସମସ୍ତଙ୍କୁ ସତର୍କବାଣୀ ଶୁଣାଇ ଦେଲା, ଖବରଦାର୍ ଏଠିକୁ କେହି ଆସିବ ନାହିଁ କି ଏଠି କେହି ପାଟିଗୁଣ୍ଡ କରିବ ନାହିଁ ।

ବାପା ସକାଳୁ ସକାଳୁ କୌଣସି କାମରେ ବାହାରକୁ ଚାଲିଯାଇ ଥିଲେ । ଭାଉଜ ରୋଷେଇ ଘରେ ବ୍ୟସ୍ତ ଥିଲେ । ଲୀନା ଓ ବାପୁ ଏପଟ ସେପଟ ହେଉଥିଲେ । ଦାଦାଙ୍କର ସତର୍କ ବାଣୀରେ ସେ ଦୁହେଁ ଡରିଥରି କୋଉ ପାଖରେ ପଶିଲେ । ଭାଉଜ ସୀମା ଏ ଘଟଣାର କୂଳ କିନାରା ନପାଇ ହତାଶ ହେଲେ । ଏ କ'ଣ ହେଲା ? ଏତେ ଶାନ୍ତ ଶିଷ୍ଟ ବାଧ୍ୟ ଦିଅରଟିର କାହିଁକି ଏ ଦୁରବସ୍ଥା ? ବାର ତେରବର୍ଷର ଅଲଅଳ

କିଶୋର ପ୍ରାଣରେ ତାର କୌଣସି ଦୁଃଖ ଯନ୍ତ୍ରଣାର ଚିହ୍ନ କେବେ ବି ସେ ଲକ୍ଷ୍ୟ କରି ନଥିଲେ । କିଏ ତାର ମନରେ ଏ ଦାରୁଣ ଆଘାତ ଦେଲା ? ଧୀରେ ଧୀରେ ଆସି ସେ ଘର କବାଟ ପାଖରେ କାନ ପାତିଲେ, କିଛି ବୁଝିପାରିଲେ ନାହିଁ । କବାଟ ଫାଙ୍କରେ ଚାହିଁଲେ । ମିଲୁ ଖଟରେ ଶୋଇ କାଗଜ କଲମ ଧରି ମୁହଁ ତଳକୁ କରି କ'ଣ ଚିନ୍ତା କରୁଛି । କ'ଣ ବୁଝି ଫେରିଆସିଲେ ସେ । ପିଲା ଦିଓଟିଙ୍କୁ ଚକୋଲେଟ୍ ଗୋଟିଏ ଲେଖା ଧରେଇ ଖେଳିବାକୁ ପଠେଇ ଦେଲେ ।



(ଖାତା କଲମ ଧରି ମିଲୁ ଶୋଇଛି)

ମିଲୁର ମନ ଚିନ୍ତାରାଜ୍ୟରେ ଘୂରି ବୁଲୁଥାଏ । ହିଁ, ଏଥର ନିଶ୍ଚେ ପାରିବ । ଏଇ ତ ଅନେକ ସୁନ୍ଦର ସୁନ୍ଦର ଉପାଦାନ ଆସି ମନରେ ଭିଡ଼ ବାନ୍ଧିଲେଣି । କାହାକୁ ସେ ଆଗ ରୂପ ଦେବ ବୁଝିପାରୁ ନଥାଏ । ହିଁ, ହିଁ ଆଖି ବୁଜି ଆଉ ଟିକେ ଉତ୍ତମ ରୂପେ ଭାବିନେଲେ ଠିକ୍ ହେବ । ତାପରେ ...? ଆଖି ଦିଓଟି ମୁଦି ହୋଇ ଆସିଲା ତା'ର । କେତେ ନାଲି ନାଲି ପରୀ ଭାସିଗଲେ, କେତେ ପାହାଡ଼, କେତେ ଝରଣା, ନଈ, ସୁନ୍ଦର ସୁନ୍ଦର ଦୃଶ୍ୟରେ ମନ ମୁଗ୍ଧ ହୋଇଗଲା ତାର । ଏଇ ରାଜ୍ୟରୁ ମନ ଫେରେଇ-ବାକୁ ତା'ର ଆଦୌ ଇଚ୍ଛା ହେଉନାହିଁ । ସଂପୂର୍ଣ୍ଣ ରୂପେ ନିଜକୁ ହଜେଇ-ଦେଲା ସେ । ତାପରେ ବଳବଳେଇ ଉଠିଲା--"ଆରେ ହେ, ହେ, ମୁଁ ତାକୁ

କେତେ କଷ୍ଟରେ କେତେ ପରିଶ୍ରମରେ ନିଜର କରିଛି । ତାକୁ ନେଇ ମୁଁ କି ସୁନ୍ଦର ଗପ ଲେଖିବି । ଆଉ ବିରକ୍ତ କରନା କହୁଚି ।"

ହଠାତ୍ କିଣି ଗୋଟାଏ ସେଁ ସେଁ ଶବ୍ଦରେ ମିଲୁର ଚେତନା ଫେରି ଆସିଲା । ଚକିତତ୍ରସ୍ତ ହେଲା ସେ, "ଆରେ ମୁଁ ଯେ ଲେଖୁଥିଲି, ମୋର ଲେଖା କାହିଁ ?" ଆଖିରେ ଯେ ଆଖିଏ ନିଦ । ପିଲାମାନେ କୁଆଡ଼େ ଗଲେଣି ? ଆଜି କ'ଣ ରବିବାରଟାରେ ବି ଘରଟା ଶୂନଶାନ୍ । ପେଟଟା ଭୋକରେ ଖାଁ ଖାଁ କରୁଛି । ଗାଧୋଇବାକୁ ତାର ମନେନାହିଁ । କବାଟ ଖୋଲି ବାହାରକୁ ଚାହିଁଲା । ଭାଉଜ ମୁରୁକି ମୁରୁକି ହସୁଛନ୍ତି ଓ ଚାହୁଁଛନ୍ତି । ସୁଆଦିଆ ବାସ୍ନାରେ ଘର ବାହାର କମ୍ପି ଉଠୁଛି । ପ୍ରେସର କୁକରର ଶବ୍ଦ, ମାଂସକଷା ବସିଛି ବୋଧେ । ଧୀର ପାଦରେ ଦୋଷୀଟି ଭଳି ଖାତାପତ୍ର ଥୋଇ ବାହାରେ ଆସିଲା ସେ । ଭାଇ ମଧ୍ୟ କେତେବେଳୁ ଆସି ଆଉ ଘରେ କଣ ଲେଖାପଢ଼ାରେ ବ୍ୟସ୍ତ । ପିଲା ଦୁହେଁ ଧାଇଁ ଆସିଲେଣି । କନୁ ଉପୁରେ ପାଖ ମାଡ଼ୁନାହାନ୍ତି । ଦାଦାଙ୍କର ମୁହଁ ଦେଖି ସେମାନଙ୍କର ଭୟ ପାଣି ଫାଟିଗଲା । ଦୁହେଁଯାକ ଫେଁ ଫେଁ ହୋଇ ହସି ଉଠିଲେ । ବାପ୍, ଏଥରକ ମଜା ଦେଖେ କିଏ ? ଭାଉଜ ତ ସିଧା ସିଧା ଆଇନାଟିଏ ଆଣି ମୁହଁ ପାଖରେ ତୋଳି ଧରିଲେ । ଲଜ୍ଜାରେ ମୁହଁ ତଳକୁ ହେଲା ମିଲୁର । କଲମରୁ ସ୍ୟାହି ଝରି ମିଲୁର ଗୋଟିଏ ପଟ ଗାଲ ବିଚିତ୍ର ବେଶ ଧାରଣ କରିଛି । ଏଥର ଆଉ ସମ୍ଭାଳେ କିଏ ? ଭାଇଙ୍କୁ ବି ଡାକରା ପଡ଼ିଲା । ସମସ୍ତେ ଏକା ସଙ୍ଗରେ ହୋ ହୋ ହୋଇ ହସି ଉଠିଲେ ।



# ବବୁନ୍‌ର ବୁଦ୍ଧି

ସେଦିନ ବବୁନ୍‌ର ଜନ୍ମଦିନ ।

ଘରେ ଆନନ୍ଦ ଉତ୍ସବ ଖିଆ ପିଆର ଧୂମ୍ ଲାଗିଥାଏ । ସାଙ୍ଗ ସାଥୀ ବନ୍ଧୁ ବାନ୍ଧବରେ ଘର ଫାଟି ପଡୁଥାଏ । ବାପାମା'ଙ୍କର ଗୋଟିଏ ବୋଲି ଅଲିଅଳି ପୁଅ ବବୁନ୍ ।

କିଏ କେତେ ଦାମିକା ଉପହାର ଆଣି ଜମା କରୁ ଥାଆନ୍ତି । ବାପା ତା'ପାଇଁ ଦାମିକା ରଙ୍ଗୀନ ପୋଷାକ, ଯୋତା, ମୋଜା, ନୂଆ ନୂଆ ଖେଳନା ପ୍ୟାକେଟ ଆଣି ଦେଇଥାଆନ୍ତି ।

ମା' ତାକୁ ସଜବାଜ କରି ପିଠା ମିଠା ଖୁଆଇ ବନ୍ଦାପନା କରିବାରେ ବ୍ୟସ୍ତ ଥାଆନ୍ତି । ନୂଆ ଜାମାପଟା ପିନ୍ଧି ଚନ୍ଦନ ଫାଟି ନାଇ ବବୁନ୍ ସତେ ଯେମିତି ଚାନ୍ଦ ପ୍ରତିମା ପାଲଟି ଯାଇଥାଏ, ସମସ୍ତଙ୍କ ମନ ଆନନ୍ଦରେ ପୂରି ଉଠୁଥାଏ, ସମସ୍ତଙ୍କ ମୁହଁରେ ହସର ଝରଣା ।

ଏତେ ଆନନ୍ଦ ଭିତରେ କିନ୍ତୁ ବବୁନ୍‌ର ମନରେ ଟିକିଏ ହେଲେ ଖୁସି ନଥାଏ । ସେ ଖାଲି ବାଧ୍ୟରେ ଏପଟ ସେପଟ ହେଉଥାଏ ସିନା, ସଜକରି ଭଲ ଗୋରା ଚକ ଚକ ମୁହଁଟି ତା'ର ଦୁଃଖରେ ଝାଉଁଳି ଯାଇ-ଥାଏ । ଏତେ ଲୋକ ଭିତରେ ସେ ଅନୁଭବ କରୁଥାଏ ଜଣକର ଅଭାବ । ସେ' ଜଣଟି ହେଲା ତା'ର ଅତି ଆଦରର ସାଙ୍ଗ ଧୀରୁ । ଶ୍ରେଣୀରେ ପଢ଼ିବା ବେଳେ, ବାହାରେ ଖେଳିବା ବୁଲିବା ବେଳେ ଧୀରୁକୁ ନଦେଖିଲେ ସେ ଅଧୀର ହୋଇ ପଡ଼େ । ଧୀରୁ ଛଡ଼ା ତାକୁ ଗୃହଆଡ଼ ଶୂନ୍ୟ ଦେଖାଯାଏ । ଧୀରୁ ଧୋବାଘର ପିଲା ହେଲେ କ'ଣ ହେଲା, ଯେମିତି ରୂପର ସେମିତି

ଗୁଣର; ତା'ର ପାଠ ପଢ଼ା ଯେମିତି, ଉତ୍ତମ ଆଗ୍ଭର ବ୍ୟବହାର ସେମିତି ମାର୍ଜିତ ଓ ଭଦ୍ର । ଗ୍ଭଲିଯିବା ଲୋକେ ଗଡ଼ିଏ ପଦାରେ ଗ୍ଭହାଁନ୍ତି ।



(ଧୀରୁ ପାଖରେ ବାପା)

ଆଜ ଭଲ ସୁନ୍ଦର ଦିନଟିରେ ଧୀରୁକୁ ଖୁବ୍ ଜ୍ୱର । ଦୁଇଦିନ ହେଲା ସେ ଉଠିବସି ପାରୁନାହିଁ କି ଆଖି ଖୋଲି ଗ୍ଭହୁଁନାହିଁ । ଘରେ ତା'ର ବାପା ଏକା । ପିଲାଟି ଦିନରୁ ସେ, ମା' ଛେଉଣ୍ଡ, ତା' ତଳକୁ ସାନ ସାନ ଆଉ ଦିଓଟି ଭାଇ ଭଉଣୀ, ସମସ୍ତଙ୍କ ମୁହଁ ଧୀରୁ ପାଇଁ ଶୁଖି ଯାଇଛି । ଗରିବ ଘର, ଓଳିଏ ଖାଇଲେ ଆରଓଳିକୁ ଉପାସ, ବାପା ମୂଲମଜୁରି ଲାଗି ଲୁଗାପଟା କାଚି ଯାହା ଦିପଇସା ରୋଜଗାର କରନ୍ତି ସେଇଥିରେ ଦୁଃଖ କଷ୍ଟେ ଚଳିଯାଆନ୍ତି । ମା'ଛେଉଣ୍ଡ ରୋଗଣା ପିଲାଟାକୁ ଛାଡ଼ି ବାପା କୁଆଡ଼େ ଯାଇ ନପାରିବାରୁ ଘରେ ଖୁଦମୁଠିଏ କି ପେଜ ଟୋପିଏ ନାହିଁ । ବିନା ପଇସାରେ ଔଷଧ ଟିକିଏ କାହୁଁ ପାଇବେ ? ପଥ ପାଚନ ବି କେଉଁଠୁ ଆସିବ ? ନିରୁପାୟ ହୋଇ ପୁଅ ପାଖରେ ବସି ସେ କେବଳ ଲୁହ ଝରାଉଛନ୍ତି । ଅଥଚ ବବୁନ୍‌ର ଜନ୍ମଦିନରେ ଆଜ କେତେ ମଉଜ ମଜଲିସ ନାଚତାମସାରେ ଖର୍ଚ୍ଚ ହେଉଛି ! ବବୁନ୍‌ର ମନ ବେଳକୁ ବେଳ ଅସ୍ଥିର ହୋଇ ଉଠିଲା । ସେ ଧୀରୁର ବିଛଣା

ପାଖରେ ବସି ତାକୁ ଆଉଁଷୁ ଆଉଁଷୁ ଅଜାଣତରେ ଆଖିରୁ ତା'ର ଝର ଝର ଲୁହ ବହିଗଲା ।

ଧୀରୁ ବାପାଙ୍କର ଆଶ୍ଚର୍ଯ୍ୟର ସୀମା ରହିଲା ନାହିଁ । ସେ ବବୁନ୍‌କୁ କୋଳକୁ ଟାଣିନେଇ ତା'ର ଲୁହ ପୋଛୁ ପୋଛୁ କହିଲେ, ବାବୁ ! ଆମେ ଗରିବ ଅଛୁଆଁ ମଣିଷ । ତମେ କାହିଁକି ଆମପାଇଁ ନଖାଇ ନପିଇ ଏତେ ଦୁଃଖ ସହୁଛ ? ଘରକୁ ଯାଅ ବାପ, ମା' ବାପା ଗୁହିଁ ଗୁହିଁ ଗୁଳିବେ ।

ବବୁନ୍ କାହାକୁ କିଛି ନକହି ଚୁପ୍ ଚାପ୍ ସେଠାରୁ ଆସି ଗାଁ ଡାକ୍ତରଙ୍କଠାରୁ ଦୁଇପାନ ଔଷଧ ନେଇ ଧୀରୁକୁ ଖୁଆଇ ଦେଲା ଓ ଶୀତରେ ଥରୁ ଥରୁ ହେଉଥିବା ଧୀରୁ ଦେହରେ ନିଜର ନୂଆଜାମା କାଢ଼ି ପିନ୍ଧାଇ, ସାଲଟି ଘୋଡ଼ାଇ ଦେଇ ମନେ ମନେ ଠାକୁରଙ୍କୁ ପ୍ରାର୍ଥନା କଲା, ଧୀରୁର ଆରୋଗ୍ୟ ପାଇଁ । ଘରେ ସମସ୍ତେ ବବୁନକୁ ନଦେଖି ଅସ୍ଥିର । ସମସ୍ତଙ୍କର ଖୋଜା ପଡ଼ୁଛି ତାକୁ । ମା'ଙ୍କ ଆଖିରେ ଲୁହ । ଏତେ ବଡ଼ ଶୁଭ ଦିନରେ ସେ କୁଆଡ଼େ ଗଲା ?

ଠିକ୍ ଏଇ ସମୟରେ କାନ୍ଧ କାନ୍ଧ ଖୋଲା ଦେହରେ ଫେରିଲା ବବୁନ୍ ! ଦୁଃଖରେ ମୁହଁଟି ଶେତା ପଡ଼ି ଯାଇଥାଏ ।

ସମସ୍ତେ ଜମା ହୋଇ ପଡ଼ିଲେ, କ'ଣ ହେଲା ବବୁନ୍‌ର !!

ସେ ସବୁକଥା ମା'ଙ୍କୁ ଖୋଲି କହିଲା, ଓ ଧୀରୁର ଆରୋଗ୍ୟ ପାଇଁ କିଛି ଟଙ୍କା ସାହାଯ୍ୟ ନେବାକୁ ଉକାଣ୍ଟି ହୁଆଁଟି ଭଳି ହାତପାତି ରହିଲା ।

ମା' ରାଗରେ ଗର୍ଜି ଉଠିଲେ । ତାଙ୍କର ଆଉ ବୁଝିବାକୁ ବାକି ରହିଲା ନାହିଁ ଯେ ଆଜି କେଉଁଥିପାଇଁ ମନଦୁଃଖରେ ନଖାଇ ନପିଇ କେଉଁଠି ଥିଲା । ମା' ତାକୁ ଖୁବ ବିରକ୍ତ ହୋଇ ଭର୍ତ୍ସନା କଲେ । ହରିଜନ ଘରକୁ ଯାଇ ସେ ଅଛୁଆଁ ହୋଇଛି । ତେଣୁ ତାକୁ ଖୁବ୍ ଦଣ୍ଡ ଦିଆଯିବ ଓ ଭଲଭାବେ ଗାଧୁଆ ପାଧୁଆ ନକଲେ ଘରେ ପଶିବ ନାହିଁ ।

ମା'ଙ୍କର ରାଗ ଦେଖି ବବୁନ୍‌ର ଆଖିରୁ ଧାର ଧାର ଲୁହ ବହି-ଗଲା, ସେ କ'ଣ କହିବ କହିବ ହୋଇ କିଛି କହି ନପାରି ଦୋଷୀଟି ଭଳି

ଠିଆ ହୋଇ ରହିଲା । ଘଟଣା କ'ଣ ଜାଣିବାପାଇଁ ବାପା ସେଠାରେ ପହଞ୍ଚିଲେ । ବାପାଙ୍କୁ ଦେଖି ବବୁନ୍ ବରଡ଼ା ପତ୍ର ଭଳି ଥରିବାକୁ ଲାଗିଲା । ବାପା ହସି ହସି ତାକୁ କୋଳକୁ ଟାଣିନେଇ ସବୁକଥା ପଚାରି ବୁଝିଲେ । ଏତେ ଛୋଟ ପିଲାଟାର ଏଭଳି ଅଦ୍ଭୁତ ବୁଦ୍ଧି ଦେଖି ପିତୃ ହୃଦୟ ତାଙ୍କର ଆନନ୍ଦରେ ଭରି ଉଠିଲା । ଅଧିକ ଆନନ୍ଦରେ ବୋକ ଦେଇ କୋଳରେ ଚାପି ଧରୁ ଧରୁ ବବୁନ୍ କହିଲା, ବାପା ହରିଜନ ପିଲା ବୋଲି ଧୀରୁ ଅଛୁଆଁ ହେବ କାହିଁକି ? ସେ ବି ତ ଆମରି ପରି ମଣିଷ । ତା'ର ବି ଆମ ଭଳି ଦେହ ମନ ସବୁ ଅଛି । ସେଦିନ ପରା ଗୁରୁଜୀ କହୁଥିଲେ, "ସବୁ ମଣିଷ ଈଶ୍ୱରଙ୍କ ପୁଅ ଝିଅ, ଆମେ ସମସ୍ତେ ଗୋଟିଏ ମା'ର ପିଲା-ଭଳି ଭାଇ ଭଉଣୀ ଆମ ଭିତରେ କେହି ଉଚ୍ଚ ନୀଚ ନୁହନ୍ତି, ଯେ' ମଣିଷ ମଣିଷ ଭିତରେ ଭେଦାଭେଦ ଛୁଆଁ ଅଛୁଆଁ ଭାବ ରଖେ ଠାକୁର ତା' ଉପରେ ଭାରି ରାଗନ୍ତି ।" ମଣିଷ ମଣିଷକୁ ସାହାଯ୍ୟ କଲେ କେମିତି ଅଛୁଆଁ ହେବ କୁହ ବାପା । ମୁଁ ତ ବହିରେ ପଢ଼ିଛି ଜଗତଠାକୁର ଜଗନ୍ନାଥ ଦାସିଆ ବାଉରୀ ହାତରୁ ନଡ଼ିଆ ଛଡ଼େଇ ଖାଇଥିଲେ, ମା' ଲକ୍ଷ୍ମୀ ଠାକୁରାଣୀ ଶ୍ରୀୟା ଚଣ୍ଡାଳୁଣୀ ଘରେ ଅତିଥି ହୋଇଥିଲେ, ଜାତିର ପିତା ବାପୁଜୀ ପରା ହରିଜନମାନଙ୍କୁ ପୁଅ ଭଳି ଦେଖୁଥିଲେ !

ଆଠ ବର୍ଷର ପୁଅ ବାବୁନ୍‌ର କଥା ଶୁଣି ବାପାଙ୍କର ଆଶ୍ଚର୍ଯ୍ୟର ସୀମା ରହିଲା ନାହିଁ । ଆନନ୍ଦରେ ତାଙ୍କ ଆଖିରେ ଲୁହ ଭର୍ତ୍ତି ହୋଇଗଲା । ବବୁନ୍‌ର ସରଳ ପ୍ରାଣରୁ ଦୁଃଖର ଦାଗ ଲିଭାଇବାପାଇଁ ତାକୁ ଅନେକ ପ୍ରକାର ଆଶ୍ୱାସନା ଦେଲେ ।

ଗୁହୁଁ ଗୁହୁଁ ମା'ଙ୍କର ଅନ୍ଧ ବିଶ୍ୱାସ ଓ ବଡ଼ଲୋକର ଅହଙ୍କାର ବାପାଙ୍କ ଉପଦେଶରେ କ୍ଷଣକ ମଧ୍ୟରେ କୁଆଡ଼େ ଉଭେଇ ଗଲା । ସେ ନିଜେ ବବୁନ ସହିତ ଧୀରୁ ଘରକୁ ଯାଇ ଡାକ୍ତର ଡାକି ତା'ର ସେବା ଶୁଶ୍ରୂଷା କରିବାରୁ ଦୁଇଦିନ ପରେ ଧୀରୁ ସୁସ୍ଥ ହୋଇ ଉଠିଲା ।



# ଖେଳୁଆଡ଼ ଟିଟୁ

ସେଦିନ ଭାରତ ଓ୍ୱେଷ୍ଟଇଣ୍ଡିଜ୍ ମଧ୍ୟରେ କ୍ରିକେଟ ଖେଳ ଚାଲିଥାଏ । ଗାଭାସ୍କର ଓ କପିଳଦେବଙ୍କର ଅଭୂତପୂର୍ବ ବୋଲିଂ ଓ ବ୍ୟାଟିଂ ସାରା ପୃଥିବୀରେ ଚହଳ ପକାଇ ଥାଏ । ପ୍ରତି ଭାରତୀୟର ମନରେ ଖୁସି ଫୁଲ ଫୁଟୁଥାଏ । ସମସ୍ତେ ଉତ୍ସାହର ସହ ଚାହିଁ ରହିଥାନ୍ତି ଫଳାଫଳ ଦେଖିବା, ଶୁଣିବା ପାଇଁ । ଅବଶେଷରେ ବିଜୟ ଲାଭକରି ବିଶ୍ୱକପ୍ ପାଇଲା ଭାରତ । କେତେ କରତାଳି, ଫୁଲମାଳ ଓ ସମ୍ମାନର ସହିତ କପ୍ ପ୍ରଦାନ ଉତ୍ସବ ସମାପ୍ତ ହେଲା ଇୟତ୍ତା ନାହିଁ ।

ଟି.ଭି.ରେ ଖେଳ ଦେଖୁ ଦେଖୁ ଆନନ୍ଦରେ ତାଳିମାରି ନାଚି ଉଠିଲା ଟିଟୁ । ସଙ୍ଗେ ସଙ୍ଗେ ମା'ଙ୍କ ପାଖରେ ଅଳିକରି ବସିଲା ତା' ପାଇଁ ଗୋଟିଏ କ୍ରିକେଟ୍ ସେଟ୍ କିଣି ଦେବାପାଇଁ । ମାତ୍ର ଛଅ ବର୍ଷ ବୟସର ଟିଟୁ ପାଇଁ ଯେ ଏ ଖେଳ ଖୁବ୍ କଷ୍ଟକର ହେବ, ଏଥିପାଇଁ ମା' ତାକୁ ବୁଝାଇଲେ, ଆଉ କିଛିଦିନ ଯାଉ ତୁ ଟିକିଏ ବଡ଼ ହୋଇ ଯା, ଏବେ ଟି.ଭି. ଦେଖି ଖେଳର ନୀତି ନିୟମ ଓ କୌଶଳ ସବୁ ବୁଝି ନେ ପରେ ଖେଳିବୁ । ଟିଟୁ କିନ୍ତୁ ଭାରି ଏକଜିଦିଆ, ସେ କେଉଁ କଥାରେ ଭୁଲିବା ପିଲା ନୁହେଁ । ତାର ଠିକ୍ ସେମିତି ବ୍ୟାଟ୍, ବଲ ଇତ୍ୟାଦି ସମସ୍ତ ସରଞ୍ଜାମ ଲୋଡ଼ା । ନଖାଇ ନପିଇ ଜିଦ୍ କରି ବସିଲା ଟିଟୁ । ବାପା ଆଉ ଯିବେ କୁଆଡ଼େ । ବଜାରକୁ ଯାଇ ଟିଟୁ ପାଇଁ ସବୁ କିଛି କିଣି ଆଣିଲେ । ଚାରିଟା ବେଳକୁ ଖେଳ ସରଞ୍ଜାମ ଧରି ସାଙ୍ଗସାଥୀଙ୍କୁ ଡାକି ଟିଟୁ ବାହାରି ପଡ଼ିଲା ଖେଳ ପଡ଼ିଆକୁ ବୀରଦର୍ପରେ କଦମ୍ ପରେ କଦମ୍ ପକାଇ । ଗୋଡ଼ରେ ପ୍ୟାଡ୍, ମୁଣ୍ଡରେ ଟୋପି ଓ ହାତରେ ମୋଜା ସାଙ୍ଗକୁ ଦେହରେ ଧଳା

ଗ୍ୟାଣ୍ଡ ପାର୍ଟି । ଏଥର ଟିଟୁ ଓ ତାର ସାଙ୍ଗମାନଙ୍କୁ ଜମାରୁ ଚିନ୍ତା ହେଉ ନଥାଏ । ସତେକି ଜଣେ ଜଣେ ଖୁବ୍ ଦକ୍ଷ ଖେଳାଳି । ହୁଇସିଲ୍ ବାଜିଲା, ଯିଏ ଯୁଆଡ଼େ ସ୍ଥାନ ଜଗି ରହିବାପାଇଁ କ୍ୟାପ୍ଟେନ୍ ଟିଟୁର ଆଦେଶ । ଟିଟୁ ଦଳ ଟସ୍‌ରେ ଜିଣିବା ପରେ ଓପନର ଟିଟୁ ବ୍ୟାଟ୍ ଧରି ଠିଆ ହେଲା ବ୍ୟାଟିଂ କରିବାପାଇଁ । ପ୍ରଥମେ ବୋଲର ସାନୁ ବୋଲିଂ ଆରମ୍ଭ କରିବାକୁ ବାହାରିଲା । ସେ ମଧ୍ୟ ମନେ ମନେ କପିଳଦେବ ଭାବି



(ଖେଳ ପଡ଼ିଆରେ ଟିଟୁ)

ନେଇଥାଏ । ଟିଟୁ ଖୁବ୍ ଉତ୍ସାହରେ ଗଳା ଫଟାଇ କହିଲା ଦେଖ ଦେଖ ଏକାସଙ୍ଗେ ଦୁଇଶହ ରନ୍ ନକରି ଛାଡ଼ୁନାହିଁ । କିନ୍ତୁ ଏ କଣ ହେଲା ? ଦେଖଣାହାରିମାନେ ଯେ ଯୁଆଡ଼େ ଥିଲେ ଗଦା ହୋଇ ପଡ଼ିଲେ ଆସି ।

ଏକାଥରକରେ ପ୍ରଥମ ବଲ୍‌ରେ ହିଁ କ୍ୟାପ୍‌ଟେନ ଟିଣ୍ଟୁର ପରାଜୟ । ଖାଲି ପରାଜୟ ନୁହେଁ, ମୁହଁ ଫାଟି ଦାନ୍ତ ଉଡ଼ି ଚାଲି ଯାଇଛି । ଦେହ ସାରା ଲହୁ ଲୁହାଣ । ବେହୋସ ହୋଇ ପଡ଼ିଆ ମଝିରେ ପଡ଼ି ରହିଛି ଟିଣ୍ଟୁ । ବାପା ମା' ସାଙ୍ଗସାଥି ପାଖପଡ଼ିଶା ସମସ୍ତଙ୍କ ଆଖିରେ ଲୁହର ବନ୍ୟା । ତାପରେ ଟିଣ୍ଟୁର ହୋସ ଆସିଲା ବେଳକୁ ସେ ନିଜକୁ ଡାକ୍ତରଖାନା ଖଟିଆରେ ଶୋଇଥିବାର ଅନୁଭବ କଲା । ମୁଣ୍ଡରେ ବରଫ, ମୁହଁରେ ପ୍ଲାଷ୍ଟର, ହାତରେ ସାଲାଇନ୍ । ଓଃ କି କଷ୍ଟ ! ପ୍ରାୟ ଏକମାସ ପରେ ସେ ସଂପୂର୍ଣ୍ଣ ସୁସ୍ଥ ହୋଇ ଉଠିଲା । କିନ୍ତୁ ମନରେ ଏତେ ଲାଜ ଓ ଭୟ ପାଇ ଯାଇଥାଏ ଯେ, କାହା ମୁହଁକୁ ଚାହିଁବାକୁ ସାହସ ବଳାଉ ନଥାଏ ।

କିଛିଦିନ ପରେ ଦିନେ ଅଫିସରୁ ଫେରିବା ବେଳକୁ ବାପାଙ୍କ ଆସି ଥାଆନ୍ତି । ବାପା ତାଙ୍କ ପାଖକୁ ଟିଣ୍ଟୁକୁ ଡାକି ଆଣି କହିଲେ, ଦେଖ୍ ସାଙ୍ଗରେ ଜଣେ ଭଦ୍ରଲୋକ ଟିଣ୍ଟୁ, ଏ ମହାଶୟ ତୋର କ୍ରିକେଟ ଖେଳର ଗୁରୁ । ୟାଙ୍କଠାରୁ ତୁ ଖେଳ ବିଷୟରେ ସବୁକିଛି ନିୟମ କୌଶଳ ଜାଣି ପାରିବୁ । ଟିଣ୍ଟୁ ତାଙ୍କୁ ପ୍ରଣାମଟିଏ କରି ଲାଜରେ ମୁହଁ ତଳକୁ କରି ଠିଆ ହୋଇ ରହିଲା ।

ୟାଙ୍କୁ ତ ସେ ଅନେକ ଥର ଟି.ଭି.ରେ ଖେଳୁଥିବାର ଦେଖିଛି । ସେ କେମିତି ବାପାଙ୍କ ସାଙ୍ଗରେ ଆମ ଘରକୁ ଆସିଲେ ତାର କିଛି ବିଶ୍ୱାସ ହେଉ ନଥାଏ । ତାଙ୍କୁ ଦେଖି ମନରେ ତାର ଅନେକ ପ୍ରଶ୍ନ; କିନ୍ତୁ କିଛି ପଦେ ବି କହିବାର ସାହସ ଆସୁ ନଥାଏ । ସେ ଟିଣ୍ଟୁର ମନକଥା ଜାଣିପାରି ତାକୁ କୋଳକୁ ଟାଣି ନେଲେ । ତା ପାଇଁ ଆଣିଥିବା କାଡ଼ବରିଜ୍ ଚକୋଲେଟ୍ ପ୍ୟାକେଟ୍‌ଟି ହାତରେ ଧରାଇଦେଇ କହିଲେ, ଏଥର ଲାଜ ଛାଡ଼ି ମନ ଖୁସିରେ କଥାବାର୍ତ୍ତା କର । ଦେଖ୍ ଟିଣ୍ଟୁ, ତମର ଆଗ୍ରହ ଓ ଉତ୍ସାହ ଦେଖି ମୁଁ ଅତ୍ୟନ୍ତ ଆନନ୍ଦିତ, ତମେ ଭବିଷ୍ୟତରେ ନିଶ୍ଚେ ଜଣେ ବଡ଼ ଖେଳାଳୀ ହେବ । କିନ୍ତୁ ଏଥିପାଇଁ ଖୁବ୍ ଧୈର୍ଯ୍ୟ ଓ ଅଭ୍ୟାସ ଦରକାର । ତର ତର ହେଲେ ଜମାରୁ ଚଳିବ ନାହିଁ ।

ଅସଲ କଥା ହେଲା ସାବଧାନ ଭାବେ ବଲ୍ ମାରିବା ଓ ଖେଳର ମାତ୍ର ନିୟମ କୌଶଳମାନ ଶିଖିବା । ଆସ, ମୁଁ ତୁମକୁ ଏ ବିଷୟରେ ଅନେକ କିଛି ବୁଝାଇ ବତାଇ ଦେବି । ପ୍ରଥମେ ଷ୍ଟେଟ ହାଲୁକା ବ୍ୟାଟ୍ ଓ ବଲରେ ଖେଳ ଶିଖି ଭଲଭାବେ ଅଭ୍ୟାସ ହେଲେ ନିଜର ଶକ୍ତି ଅନୁସାରେ ଖେଳିବାକୁ ହେବ । ମଝିରେ ମଝିରେ ସେ ଆସି ଟିଟୁ ଓ ତାର ସାଙ୍ଗମାନଙ୍କୁ ଖେଳ ଶିଖାଇ ଦେଇ ଯାଆନ୍ତି । ଟିଟୁ ଏବେ ପୁରାପୁରି ବୁଲୁଭାଇଙ୍କ ନିର୍ଦ୍ଦେଶରେ ଖେଳ ଖେଳୁଛି । ବୁଲୁଭାଇ ହିଁ ତା'ର ଗୁରୁଦେବ । ଏଣିକି ଟିଟୁ ଜଣେ ନାମଜାଦା ଖେଳାଳୀ । ତା'ର ଖେଳଟିମ୍ ଟିଟୁ ପାଇଁ ଗୃହଆଡ଼େ ଚହଳ ପକାଇଛି । ସେମାନେ ବିଭିନ୍ନ ଦଳ ସହ ଖେଳ ବିଜୟ ଲାଭ କରୁଛନ୍ତି । ଏଥରକ ଟିଟୁ ଦଳ ଖେଳିବା ପାଇଁ ବମ୍ବେ ଯିବାକୁ ମନୋନୀତ ହୋଇଛନ୍ତି । ଟିଟୁର ପିଲାଦିନର ସ୍ମୃତି ସ୍ୱରୂପ ସେଇ ଭଙ୍ଗା ଛୁମୁ ଦାନ୍ତଟି ଏବେ ବି ସେମିତି ଖଣ୍ଡିଆ ହୋଇ ରହିଛି । ତାର ଇଚ୍ଛା ସେ ଦାନ୍ତକୁ ଆଉ ନୂଆ କରିବ ନାହିଁ । ଭବିଷ୍ୟତର ଲକ୍ଷ ପଥରେ ଏଇ ଭଙ୍ଗା ଦାନ୍ତଟି ହିଁ ତାକୁ ସବୁଠୁ ବେଶୀ ପ୍ରେରଣା ଯୋଗାଇବ ।



# କୁନି ଚିତ୍ରକର

ସୁନ୍ଦର ଚିତ୍ରଟିଏ ଦେଖିଲେ କାହାକୁ ଖୁସି ନଲାଗେ ? ଠିକ୍ ସେତିକବେଳେ ଜାଣିବାକୁ ମନ ହୁଏ, ଆହା, କିଏ ସେଇ ଚିତ୍ରକର, କେଉଁଠି ତା'ର ଘର, କ'ଣ ତା'ର ନାଁ ?

ଆସ ତେବେ, ସେମିତି କୁନି ଚିତ୍ରକରଟି ସହିତ ତୁମର ପରିଚୟ କରାଇ ଦିଏ ।

ଛୋଟ ଝିଅଟି ଲିପିକା । ମାତ୍ର ଆଠ ବର୍ଷ ବୟସ । ଚତୁର୍ଥ ଶ୍ରେଣୀରେ ପାଠ ପଢ଼େ । ସେ ଖୁବ୍ ସୁନ୍ଦର ସୁନ୍ଦର ଚିତ୍ର ଆଙ୍କିପାରେ । ଗଛ, ବୃକ୍ଷ, ନଈ, ନାଳ, ପାହାଡ଼, ଝରଣା, ଫୁଲ, ଫଳ, ମଣିଷ, ପଶୁ, ପକ୍ଷୀ କେହି ତା' ତୂଳିରୁ ବାଦ୍ ଯାଆନ୍ତି ନାହିଁ । ରଙ୍ଗ ତୂଳିରେ ସଦାବେଳେ ତା'ର କାମ । ଯେତେବେଳେ ଦେଖ ଚୁପ ହୋଇ ବସି ଚିତ୍ର ଅଙ୍କାରେ ଲାଗି ପଡ଼ିଥିବ । ସେଥିପାଇଁ ବାପା ତାକୁ ଖୁବ୍ ଗେହ୍ଲା କରନ୍ତି । ଅଫିସରୁ ଫେରିଲା ବେଳେ କେଉଁଦିନ ରଙ୍ଗ ବାକ୍ସଟାଏ ତ, କେଉଁଦିନ ତୂଳି ପେନ୍ସିଲ ବା ଚିତ୍ର ଅଙ୍କା ସରଞ୍ଜାମ କିଛି କିଣିଆଣି ଥାଆନ୍ତି । ଏସବୁ ଦେଖି ଲିପିକାର ଆନନ୍ଦ କହିଲେ ନସରେ । କିନ୍ତୁ ତା'ର ଏଇ ସବୁବେଳେ ଚିତ୍ର ଆଙ୍କିବା କଥାକୁ କାହିଁକି କେଜାଣି ବୋଉ, ଅପା, ଭାଇ ଜେଜେ କେହି ପସନ୍ଦ କରିପାରନ୍ତି ନାହିଁ । ଚିତ୍ରପାଇଁ ଯେ ତା'ର ଅନେକ ପାଠପଢ଼ା ବାକି ପଡ଼ି ରହୁଛି, ଜାଣି ମଧ୍ୟ ଭୁଲି ଯାଏ ଲିପିକା । ପ୍ରତିଦିନ ରାତି ନପାହୁଣୁ, ସକାଳର ଖରା ପୃଥିବୀ ନଛୁଉଁଣୁ ସେ ଉଠିପଡ଼ି ଫୁଲ, ପ୍ରଜାପତି, ସକାଳର ନାନା ପ୍ରକାର ଦୃଶ୍ୟ ଦେଖି ବିଭୋର ହୋଇ ଛବି

ଅଙ୍କାରେ ହଜିଯାଏ । କେତେବେଳେ ସ୍କୁଲ୍ ବେଳ ଗଡ଼ି ଯାଏ ତ ଗାଧୁଆ, ଖିଆ ବେଳ ଚାଲିଯାଏ, ଜାଣି ପାରେନାହିଁ ଲିପିକା ।

କିନ୍ତୁ ଲିପିକା କଣ କରିବ ଯେ । ବହିର ପୃଷ୍ଠା ଖୋଲୁ ଖୋଲୁ ଆଙ୍କିବା କଥା ତା'ର ଆଗେ ମନେ ପଡ଼ିଯାଏ । ପ୍ରତିଟି ଅକ୍ଷର ତାକୁ ଗୋଟିଏ ଗୋଟିଏ ଚିତ୍ରପରି ମନେହୁଏ । କାହାର ବିରକ୍ତି, ଉପଦେଶ କିଛି ବି ତା ମନକୁ ଛୁଇଁପାରେ ନାହିଁ ।



(ଲିପିକା ଚିତ୍ର ଆଙ୍କୁଛି)

କିଛିଦିନ ତଳେ ଗୋଟିଏ ଚିତ୍ର ପ୍ରତିଯୋଗିତା ହୋଇଥିଲା । ସେଥିପାଇଁ ତାକୁ ଖୁବ ଭାବିଚିନ୍ତି ଚିତ୍ରଗୁଡ଼ିଏ ଆଙ୍କିବାକୁ ହେଲା । ଚିତ୍ର ପାଇଁ ସେ ଏତେ ବ୍ୟସ୍ତ ରହିଲା ଯେ, କିଛି ବି ପଢ଼ି ପାରିଲା ନାହିଁ । ଏଥର ପରୀକ୍ଷାରେ ସେ ଖୁବ ଖରାପ କଲା । ବହୁତ ପିଲା ତାକୁ ଟପି ଯାଇଥିଲେ ।

ଷାଣ୍ମାସିକ ପରୀକ୍ଷା ଫଳ ବାହାରିବା ଦିନ ବାପା ମଧ୍ୟ ଲିପିକା ଉପରେ ଖୁବ୍ ବିରକ୍ତ ହେଲେ । ଅନ୍ୟ ସମସ୍ତଙ୍କ ରାଗ କଥା କହିଲେ ନସରେ । ଲିପିକାକୁ ଭାରି ଲାଜ ମାଡ଼ିଲା । ସାଙ୍ଗସାଥି, ବନ୍ଧୁ କାହାକୁ କେମିତି ମୁହଁ ଦେଖାଇବ ସେ ? ନିଜର ଚିତ୍ରଅଙ୍କା ଉପରେ ଏଥର ତା'ର ଖୁବ୍ ଘୃଣା ଆସିଲା । ଭାବିଲା, ଯଦି କେବେ ସେ ଚିତ୍ର ଶିଳ୍ପୀଟିଏ ହୁଏ, ପାଠ ନ ପଢ଼ିଲେ କିଛି ଉନ୍ନତି କରିପାରିବ ନାହିଁ । ପଢ଼ିଲେ ଯିନା ସେ ଅଧିକ ଏ ବିଷୟରେ ଜାଣିବ ।

ଶେଷରେ ସେ ମନେ ମନେ ଶପଥ କଲା, ଏଣିକି ଆଉ ଅଙ୍କା ଅଙ୍କିରେ ମନ ବଳାଇବ ନାହିଁ । ଭାଇ ବାପାଙ୍କ ପରି ମନଦେଇ ପଢ଼ିବ । କ୍ଲାସରେ ଅଧିକ ନମ୍ବର ରଖି ସୁନାପିଲା ହେବ । ରଙ୍ଗ ତୂଳି, ଚିତ୍ରଜିନିଷ ସବୁ ଏକାଠି କରି ଗୋଟିଏ ବାକ୍ସ ଭିତରେ ପୂରାଇ ତାଲାଟିଏ ପକାଇ ଦେଲା । ସେପଟୁ ମନ ଫେରାଇ ଚୁପ୍‌ଚାପ ବସି ପାଠପଢ଼ାରେ ମନ ଦେଲା । ଘରେ ସମସ୍ତେ ଲିପିକାକୁ ଦେଖି ଚକିତ ହୋଇଗଲେ । ଟ୍ୟୁସନ ପଢ଼ାଠାରୁ ସ୍କୁଲ ପଢ଼ାଯାଏ ସବୁ ଏଣିକି ଠିକ୍ ଠିକ୍ କଲା ସେ । ଖାଇବା ଶୋଇବା ଖେଳିବା ଭୁଲି ପଢ଼ାରେ ମନ ଲଗାଇଲା । ବାର୍ଷିକ ପରୀକ୍ଷା ବେଳକୁ ତା'ର ସବୁ ପାଠ ସରି ଯାଇଥାଏ । ଏଥର ପରୀକ୍ଷାରେ ସମସ୍ତଙ୍କୁ ଟପି ଯାଇଥିଲା ଲିପିକା । ମାତ୍ର ଚିତ୍ରଅଙ୍କା ଛାଡ଼ି ଦେଇଥିବାରୁ ମନରେ ଏତେ ଟିକେ ସରାଗ ନଥାଏ । ଏକଥା ଲିପିକା ଛଡ଼ା କେହି ଜାଣିପାରୁ ନଥାନ୍ତି ।

ଏମିତି ଗୋଟେ ଦିନରେ ଲିପିକାର ସୁନାମ ଚାରିଆଡ଼େ ଖେଳେଇ ହୋଇଗଲା । ସମ୍ବାଦପତ୍ର, ରେଡିଓ, ଟେଲିଭିଜନ ସବୁଥିରେ ପ୍ରଚାର ହେଲା ରାଜ୍ୟ ଶିଶୁଚିତ୍ର ପ୍ରତିଯୋଗିତାରେ ସେ ପ୍ରଥମ ସ୍ଥାନ ପାଇଛି । ସମସ୍ତଙ୍କ ମୁହଁରେ ଲିପିକାର ପ୍ରଶଂସା । ଦେଶର ଚାରିଆଡୁ ଅଭିନନ୍ଦନ ପତ୍ରମାନ ଆସି ଲିପିକା ପାଖରେ ପହଞ୍ଚୁଥାଏ ।

ମାମୁଁ ସେଦିନ ଗୁଡ଼ାଏ ଚିତ୍ର ଉପକରଣ ଓ ଲିପିକା ପାଇଁ ନୂଆ ଡ୍ରେଶ ଇତ୍ୟାଦି ଧରି ପହଞ୍ଚିଲେ । ଘରେ ସମସ୍ତେ ଆନନ୍ଦରେ ଫାଟି

ପଡୁଥିବା ବେଳେ ଲିପିକା ଓଠରେ ହସ ପରିବର୍ତ୍ତେ ଆଖିରୁ ଧାର ଧାର ଲୁହ ଝରି ପଡୁଥାଏ ।

ପୁରସ୍କାର ଆଣିବାକୁ ଜଲଦି ଜଲଦି ବାପାଙ୍କ ସାଙ୍ଗରେ ବାହାରିବା ପାଇଁ ଲିପିକାକୁ ନିର୍ଦ୍ଦେଶ ଦିଆଗଲା ! ବୋଉ ତାକୁ ସଜବାଜ କରିବା ପାଇଁ ଚଞ୍ଚଳ ହୋଇ ଉଠିଲେ । ଏତେ ବଡ଼ ଖୁସିର ଦିନରେ ଏ କ'ଣ ?




ପୁରସ୍କାର ବିତରଣ ସଭା

ବାପାଙ୍କୁ ଜାବୁଡ଼ି ଧରି କଇଁ କଇଁ କାନ୍ଦି କାନ୍ଦି ଲୋଟି ଯାଉଛି ଲିପିକା କାହିଁକି ? କ'ଣ ତା'ର ହେଲା ଆଜି ?

ବାପା ଯେତେବେଳେ କୋଳକୁ ନେଇ ଗେହ୍ଲା କରି ପଚାରିଲେ, ଅସଲ କଥା ଜଣା ପଡ଼ିଗଲା । ଲୁହ ଛଳଛଳ ଆଖିରେ ବିନମ୍ର ଭାବରେ କହିଲା, ମୁଁ ସେ ପୁରସ୍କାର ପାଇଁ ଯିବି ନାହିଁ ବାପା ! ସବୁଦିନ ପାଇଁ ଚିତ୍ରଅଙ୍କା ଛାଡ଼ିଦେଇଛି ମୁଁ । ଅନେକ ବୁଝାବୁଝି କରି, ବୋଧ ଦେଇ ସାଙ୍ଗରେ ଲିପିକାକୁ ନେଇଗଲେ ବାପା । ଖୁବ୍ ବଡ଼ ଉତ୍ସବ ଅନୁଷ୍ଠାନ

ମଧ୍ୟରେ ପ୍ରଧାନ ଅତିଥି ତାକୁ ପୁରସ୍କାର ବଢ଼ାଇ ଦେଲେ । ଲିପିକା ନିଜ ଅଭିମାନରେ ମୁହଁ ଉପରକୁ ଉଠେଇ ପାରୁନଥାଏ । ପ୍ରଧାନ ଅତିଥିଙ୍କ ସାଙ୍ଗରେ ସମସ୍ତେ ତାକୁ ମଞ୍ଚ ଉପରେ କାଖେଇ ନେଲେ । ଅସଂଖ୍ୟ କରତାଳରେ ସଭା କମ୍ପି ଉଠିଲା ।

ଘରକୁ ଫେରିଲା ପରେ ବାପା କହିଲେ ଲିପିକା, ମୁଁ ବୁଝି-ପାରୁଛି, ତୁ କାହିଁକି ଅଭ୍ୟାସରେ ପଡ଼ୁଛୁ ଏବଂ ଅଭିମାନରେ ଚିତ୍ରଅଙ୍କା ଛାଡ଼ି ଦେଇଛୁ ! ଏଥର ମୁଁ ତୋ'ର ରୁଟିନ୍ ତିଆରି କରିଦେଉଛି । ସେଇ ଅନୁସାରେ କାମ କଲେ ଦେଖିବୁ, ତୋ'ର କିଛି ଅସୁବିଧା ହେବନି । ସବୁ କାମ ଠିକ୍ ଠିକ୍ ହୋଇଯିବ ।

ଏଣିକି ଲିପିକା ସପ୍ତାହରେ ଦୁଇଦିନ ଡ୍ରଇଂ ସ୍କୁଲ ଯାଏ । ଖୁବ୍ ସକାଳୁ ଉଠି ଚିତ୍ର ଆଙ୍କେ । ପଢ଼ାବେଳେ ପଢ଼ା, ଖେଳବେଳେ ଖେଳ, ରୁଟିନରୁ ଟିକିଏ ବି ଏପଟସେପଟ ହୁଏ ନାହିଁ । ସେଥିପାଇଁ ତା'ର ପାଠ ପଢ଼ା, ଚିତ୍ରଅଙ୍କା କେହି କାହାର କିଛି କ୍ଷତି କରି ପାରନ୍ତି ନାହିଁ ।

ଏବେ ଲିପିକା ଭଲ ପଢ଼ୁଛି ଓ ଭଲ ଆଙ୍କୁଛି । ତା'ର ଇଚ୍ଛା, ବଡ଼ ହେଲେ ସେ ଜଣେ ଭଲ ଚିତ୍ରଶିଳ୍ପୀ ହୋଇ ଦେଶ ବିଦେଶରେ ନାଁ କରିବ । ପାଠପାଇଁ ଚିତ୍ର, କିମ୍ବା ଚିତ୍ର ପାଇଁ ପାଠ କାହାରିକୁ ଭୁଲିଯିବ ନାହିଁ ।



# ମାଗିଖିଆଠାରୁ ଲାଗିଖିଆ ଭଲ

ପଦନପୁର ଗାଁରେ ମଦନ ଓ ଗୋପାଳ ନାମରେ ଦୁଇଟି ଭାଇ ରହୁଥାନ୍ତି । ବଡ଼ଟିର ନାମ ମଦନ ଓ ସାନଟିର ନାମ ଗୋପାଳ । ଅତି ଶୈଶବ ବେଳରୁ ସେମାନେ ବାପ ମା' ଛେଉଣ୍ଡ । ନିଜର ବୋଲି ସାହାଯ୍ୟ କରିବାପାଇଁ ଜଣେ କେହି ନଥାନ୍ତି । ତେଣୁ ପାଖ ପଡ଼ଶାମାନେ ଦୟା ପରବଶ ହୋଇ ବେଳେ ବେଳେ ତାଙ୍କର ଭଲମନ୍ଦ ବୁଝିଯାଆନ୍ତି । ମୁଣ୍ଡଗୁଞ୍ଜିବାକୁ ସାମାନ୍ୟ କୁଡ଼ିଆଟିଏ ଛଡ଼ା ତାଙ୍କର ଆଉ କିଛି ସମ୍ବଳ ନଥାଏ । ସକାଳୁ ସକାଳୁ ଦୁଇଭାଇ ବାହାରି ପଡ଼ନ୍ତି ଭିକ ମାଗିବାକୁ । ଦିନସାରା ବୁଲି ବୁଲି ସଞ୍ଜବତି ଜଳିବା ବେଳକୁ କୁଡ଼ିଆକୁ ଫେରନ୍ତି ।

ଧୀରେ ଧୀରେ ସେମାନଙ୍କ ବୟସ ବଢ଼ିଲା । ମଦନକୁ ସତର ବର୍ଷ ଓ ଗୋପାଳକୁ ପନ୍ଦର ବର୍ଷ ହେଲା । କାହିଁକି କେଜାଣି ଭିକ ମାଗିବାକୁ ଗୋପାଳକୁ ଭାରି ଖରାପ ଲାଗିଲା । କିନ୍ତୁ ବଡ଼ଭାଇକୁ ଏକଥା କହିବାକୁ ସାହସ ହେଉ ନଥାଏ । ଦିନକର ଘଟଣା, ବେଳ ରତ ରତ ହୋଇ ଆସୁଥାଏ । ଭିକମାଗି ଫେରିବା ବାଟରେ ମନରେ ସାହସ ବାନ୍ଧି ଗୋପାଳ କହିଲା, ଭାଇ ! ଆମେ ଆଉ କେତେଦିନ ଏମିତି ଭିକ ମୁଠିଏ ପାଇଁ ପର ଓଳିତଳେ ଗୋଡ଼ଭାଙ୍ଗି ଠିଆହେବା । ଆମର ତ ହାତ ଗୋଡ଼ ଅଛି । ଭିକ ନ ମାଗି ଆମେ କଣ ଆଉ କିଛି କାମ କରିପାରିବା ନାହିଁ ? ମଦନ ତା' କଥାକୁ ହସରେ ଉଡ଼ାଇ ଦେଇ କହିଲା, ଆମର ତ ଜମିବାଡ଼ି କିଛି ନାହିଁ । ଆମେ ଏତେ ଗରିବ ଯେ ଭିକମାଗି ଜୀବନ ବଞ୍ଚାଇବା ଛଡ଼ା ଆମ ପାଖରେ ଅନ୍ୟ ଉପାୟ କିଛି ନାହିଁ । ଆମେ କେଉଁ ପାଠ ପଢ଼ିଛେ ଯେ ଚାକିରି କରିବା, ହାତରେ କିଛି ଟଙ୍କା ପଇସା ଅଛି ଯେ ବ୍ୟବସାୟ କରିବା ।

ଗୋପାଳ କହିଲା—ଚାହିଁକି ଭାଇ, କାହା ଘରେ ତ ମୂଲ ମଜୁରି ଖଟିପାରିବା, ଦେଶରେ ଏତେ ବଡ଼ ବଡ଼ କୋଠା ବାଡ଼ି, କଳକାରଖାନା ବସୁଛି । ଆମର ତାକତ ଅଛି, ଚାହିଁଲେ ଆମେ ଏଇ କାମ କରି ଭଲ ପଇସା ରୋଜଗାର କରି ଖୁସିରେ ଚଳିବା । ମଦନ ତା କଥାକୁ ବେଖାତିର ଭାବ ଦେଖାଇ କହିଲା, ଏତେ କଷ୍ଟରୁ କଅଣ ମିଳିବ ? ସେଠି ଖଟିବାରେ କେତେ କଷ୍ଟ ଜାଣୁ ? ଏମିତି ତ ସହଜରେ ଟିକିଏ ବୁଲି ଆସିଲେ ଅଣ୍ଟି



(ଦୁଇ ଭାଇ ମଦନ ଓ ଗୋପାଳ)

ପୁରିଯାଉଛି । ପରର ମୂଲ ମଜୁରି ଲାଗି କଷ୍ଟ କରିବା ଠାରୁ ଏ କାମ ଖୁବ୍ ସହଜ । ଆମପରି ତ ଶହ ଶହ ଲୋକ ଭିକମାଗି କୁଟୁମ୍ବ ପୋଷୁଛନ୍ତି ।

ଗୋପାଳ କାନକୁ ମଦନର ଏଇ କଥାଗୁଡ଼ାକ ଭାରି ଖରାପ ଲାଗିଲା । ସେ କେତିକଣ୍ଟା ନ କହି ନୀରବ ରହିଲା । ତା ପରଦିନ ସେ ଠିକ୍ କଲା, ଭାଇ ପଛେ ଭିକମାଗି ଯାଉ, ସେ ଗାଁ ଲୋକଙ୍କର ମୂଲ ମଜୁରି ଲାଗିବ । ଯେତିକି ମିଳିବ ସେତିକରେ ଚଳିବ ସିନା, ଆଉ ଏଣିକି ବାରଦୁଆର ବୁଲି ନିଜକୁ ମିଛ ମିଛିକା ଅନ୍ଧ, ଛୋଟା କହି, ଅଭିନୟ କରି ଭିକ ମାଗିବ ନାହିଁ । ତାଠାରେ ଶକ୍ତି ଓ ସାହସ ଅଛି । ଭଗବାନ ନିଶ୍ଚୟ ତାକୁ ସାହାଯ୍ୟ କରିବେ ।

ଗୃହଁ ଗୃହଁ ସେ ପରିଶ୍ରମୀ ହୋଇ ଉଠିଲା । ଯାହା ରୋଜଗାର କଲା, ଦିନ ଶେଷରେ ସବୁ ଆଣି ଭାଇ ପାଖରେ ଥୋଇ ଦେଉଥାଏ । ତା'ର ସଚ୍ଚୋଟ ପଣିଆ ଓ କାମ ଦେଖି ଗାଁରୁ ପାଞ୍ଚ ଗାଁ ଲୋକ ତା ଉପରେ ଖୁସିହୋଇ ନୂଆ ନୂଆ କାମରେ ଡକାଡ଼ କରୁଥାଆନ୍ତି । ପିଲାଟାର ଏଇ ସାଧୁ ମନୋବୃତ୍ତି ଦେଖି ସମସ୍ତେ ତାକୁ ପ୍ରଶଂସା କରିବାକୁ ଲାଗିଲେ । ପରିଶ୍ରମ କରିବା ଦ୍ୱାରା ତାର ସ୍ୱାସ୍ଥ୍ୟ ଦିନକୁ ଦିନ ସୁନ୍ଦର ହୋଇ ଉଠିଲା । ଗାଁର ପ୍ରତି କାମରେ ଏଣିକି ଖୋଜାପଡ଼େ ଗୋପାଳକୁ । ନିଜକୁ ଆଉ ଭିକାରୀ, ଅକ୍ଷମ ମନେକଲା ନାହିଁ ସେ । ପାଞ୍ଚଜଣଙ୍କ ସାଙ୍ଗେ ମିଳି ମିଶି ଆନନ୍ଦରେ ଚଳିବାକୁ ଲାଗିଲା ।

ନିଜର ଭାଇ ହେଲେ କଅଣ ହେବ । ମଦନକୁ ଗୋପାଳର ଏଇ ସୁନାମ ଆଦୌ ଭଲ ଲାଗିଲା ନାହିଁ । ତେଣୁ ସେ ଗୋପାଳକୁ ଗାଳି ଗୁଲଜ କରି କୁଡ଼ିଆରୁ ତଡ଼ି ଦେଲା । ଗୋପାଳ କାନ୍ଦି କାନ୍ଦି ଭାଇର ଗୋଡ ହାତ ଧରି କେତେ ନେହୁରା ହେଲା । ତଥାପି ଫଳ କିଛି ହେଲା ନାହିଁ ।

ଗୋପାଳ ନିରୁପାୟ ହୋଇ ଗାଁ ଶେଷ ମୁଣ୍ଡରେ ଝାଟିମାଟିରେ ଖଣ୍ଡେ କୁଡ଼ିଆ ତିଆରି କଲା । କ୍ରମେ ତା'ର ରୋଜଗାର ବଢ଼ିବାରୁ ସେ କିଛି ପଇସା ସଞ୍ଚୟ କଲା । ବିଶ୍ରାମ ସମୟରେ ହେଁସ, ମଶୁଣି ବୁଣିଲା । ଡ଼ଙ୍ଗା ତିଆରି କଲା, ଜଙ୍ଗଲରୁ କାଠି କୁଟା ସଂଗ୍ରହ କରି, ନଈରୁ ମାଛ କେଙ୍କଡ଼ା ଧରି ହାଟ ବଜାରରେ ବିକିଲା, ଅଳ୍ପଦିନ ପରେ ସେ ଛୋଟ

ପାନ ଦୋକାନଟିଏ କଲା । ଗୋପାଳର ଆଗ୍ମର ବ୍ୟବହାରରେ ଗ୍ରାହକ-ମାନେ ଖୁସି ହୋଇ ତା ପାଖକୁ ବେଶି ବେଶି ଆସିଲେ । କିଛିଦିନ ପରେ ସେ ଶ୍ରେଷ୍ଠ ଡାଲି ଗୁଡ଼ଜ ଦୋକାନଟିଏ ମଧ୍ୟ କରି ପାରିଲା । ପଇସା ଯେତେ ରୋଜଗାର କରି ସୁଖରେ ରହିଲେ ବି ବଡ଼ଭାଇ ମଦନର ଦୁଃଖ ତାକୁ ଦିନକୁ ଦିନ ଅଧିକ କଷ୍ଟ ଦେଲା । କ'ଣ କରିବ କିଛି ଠିକ୍ କରି ପାରୁ ନଥାଏ । ବଡ଼ଭାଇ ଯେମିତି ଜିଦ୍‌ଖୋର ତା' କଥାରେ କାଳେ



(କାର୍ଯ୍ୟରତ ଗୋପାଳ)

ଆଗଭଳି ବିରକ୍ତ ହେବ । ତେଣୁ ସେ ଇଚ୍ଛା କରି ମଧ୍ୟ ତା ପାଖକୁ ଯିବାକୁ ସାହସ କରୁ ନଥାଏ । ଯିଏ ଦିନେ ସାତ ଶତ୍ରୁ ପରି ତାକୁ ପାଖରୁ ଠେଲି ଦେଲା, କେମିତି ଯାଇ ତାକୁ ବୁଝାଇବ ଗୋପାଳ !

ଏଣେ ମଦନର ଅବସ୍ଥା ଦିନକୁ ଦିନ ଶୋଚନୀୟ ହୋଇ ପଡ଼ିଲା । ସବୁବେଳେ ଖରାରେ ତରାରେ ବୁଲି ହେକ ଉପାସରେ ରହିବା ଦ୍ୱାରା ଦେହ ରୋଗଣା ହୋଇଗଲା । ସେ ବୁଲିବୁଲି ନପାରି କୁଡ଼ିଆରେ ପଡ଼ି

ରହିଲା । ଔଷଦ ବା ପଥି ଟିକଏ ପାଇଲା ନାହିଁ । ଘୃଣାରେ ଲୋକମାନେ ତାକୁ ନାକ ଟେକିଲେ ।

ଏ ଘଟଣା ଦେଖି ବେଶିଦିନ ଚୁପ୍ ହୋଇ ରହି ପାରିଲା ନାହିଁ ଗୋପାଳ । ଭାଇର ଦୁଃଖରେ ମନ ତା'ର ବରଫ ଭଳି ତରଳି ଗଲା । ସେ ସାହସ ବାନ୍ଧି ଯାଇ ପହଞ୍ଚିଲା ମଦନ ପାଖରେ । ମଦନର ରୋଗା ଚେହେରା ଦେଖି ଭୟ ଓ ଆତଙ୍କରେ ଶିହରି ଉଠିଲା ତା'ର ମନ । ଆପେ ଆପେ ଆଖିରୁ ଲୁହଧାର ବହିଗଲା । ମଦନ ଗୋପାଳକୁ ଦେଖି ବିକଳ ଗୁହାରିରେ ହାତ ଠାରିଲା । ଭାଇକୁ ପାଖରେ ପାଇ ଅସ୍ଥି କଙ୍କାଳ ସାର ହାତରେ କୁଣ୍ଢାଇ ଧରିଲା । କୋରଡଆ ଆଖିରୁ ଝରିଗଲା ଅସରନ୍ତି ଲୁହର ଝରଣା ।

ଗୋପାଳ ଆଉ ମୁହୂର୍ତ୍ତେ ବିଳମ୍ବ ନକରି ଭାଇକୁ କାନ୍ଧରେ ପକାଇ ନିଜ ଘରକୁ ନେଇ ଆସିଲା । ଡାକ୍ତର ଡାକି ତା'ର ଉପଯୁକ୍ତ ଚିକିତ୍ସା କଲା । ସେବା ଯତ୍ନ ପାଇ ମଦନ ପୁଣି ପୂର୍ବଠାରୁ ଅଧିକ ସୁସ୍ଥ ହୋଇ ଉଠିଲା ।

ଏଥର ଗୋପାଳର ଆନନ୍ଦର ସୀମା ନାହିଁ । ସମ୍ପୂର୍ଣ୍ଣ ଆରୋଗ୍ୟ ହେବାପାଏ ତାକୁ ଡାକ୍ତରଙ୍କ କଥା ଅନୁସାରେ ଚଳାଇ ନେଲା । ମଦନ ଓ ଗୋପାଳ ଏଣିକି ଦୁଇ ଜଣ ମିଶି ଖୁବ୍ ଖୁସିରେ କାମରେ ଲାଗି ପଡ଼ିଲେ । ଏତେ ଦିନ ପରେ ମଦନ ଠିକ୍ ବୁଝିଲା ଯେ ମାଗି ଖାଇବା ଠାରୁ ଲାଗି ଖାଇବା ଭଲ ।



# ସୁନା ଝିଅ ଦେବୀ

ଆମ ଗାଁ ଭୋଳ ନାହାକର ଝିଅ ଦେବୀ । ନାଆଁଟି ଯେମିତ ରୂପଟି ସେମିତ । ଚାରି ଭାଇରେ ଗୋଟିଏ ଭଉଣୀ ହୋଇଥିବାରୁ ଭାଇ-ମାନଙ୍କଠାରୁ ବାପା ମା' ଯାଏ କେହି ତାକୁ ଟାଣିକରି ପଦେ କହନ୍ତି ନାହିଁ । ଭୋଳ ନାହାକର ଧନ ସମ୍ପତ୍ତି ସେପରି କିଛି ନାହିଁ । ମୂଲ ମଜୁରି ଲାଗି ଭାଗ ବଖରା କରି ସୁଖେ ଦୁଃଖେ ସଂସାର ଚଳେଇ ନିଏ । ତେଣୁ ଇଚ୍ଛା ଥିଲେ ବି ପିଲାମାନଙ୍କୁ ସେ ବେଶି ପାଠଶାଠ ପଢେଇ ପାରିଲା ନାହିଁ । ଗୃହଶାଳୀ ପଢାରୁ ହିଁ ପୋଥିରେ ଡୋରି ବନ୍ଧା ହୋଇ ରହିଲା । କାମ ଧନ୍ଦାରେ ବାପା ମାଆଙ୍କୁ ମିଳିମିଶି ପିଲାମାନେ ସାହାଯ୍ୟ କରନ୍ତି । ଦେବୀ ଭାଇ ସାଙ୍ଗରେ ବିଲବାଡ଼ିକୁ ଯିବା, ଘାସ କାଟିବା, ଧାନ ଗୋଟେଇବାରେ କେତେବେଳେ ସାହାଯ୍ୟ କରେ ତ, କେତେବେଳେ ମାଆ ସାଙ୍ଗରେ ଘର କାମରେ ଲାଗିପଡ଼େ । ସୂର୍ଯ୍ୟଦେବତାଙ୍କର ସକାଳର କିରଣ ମାଟି ଉପରେ ପଡୁ ନପଡୁଣୁ ସମସ୍ତେ ଯେଝା କାମକୁ ବାହାରି ପଡନ୍ତି । ଗାଁ ନଈକୂଳ ବାର ମାସରେ ତେର ଫସଲରେ ଶୋଭା ପାଏ । ଶୀତଦିନେ ସୋରିଷ ଫୁଲ ମଣ୍ଡି ହୋଇ ଗଲେ, ବରି ମୁଗ ଛୁଇଁ କଷି ଧରିଲେ, ଆଖୁ ଫୁଲ ଚଅଁର ଢାଳିଲେ, କୁରୁଳି ଉଠେ ଦେବୀର ମନ । ସେ ସବୁ ଦୁଃଖ ଅଭାବକୁ ଭୁଲିଯାଏ ।

ଅଭାବ କ'ଣ କି ତାର ? ଠାକୁର ତ ତାକୁ ଏତେ ଭଲ ବାପା, ମା, ଭାଇ ଦେଇଛନ୍ତି । ମୁଠେ ଖାଇବା, ଖଣ୍ଡେ ପିନ୍ଧିବାକୁ ଅଭାବ ରଖି ନାହାନ୍ତି । ନଈର କୁଳୁ କୁଳୁ ଗୀତ, ଅସୁମାରି ଚଢ଼େଇଙ୍କ କିଚିରି ମିଚିରି

ସୁର, ସଞ୍ଜ ସକାଳର ସୁନ୍ଦର ଛବି, ସବୁ ଯେମିତି ତା' ମନରେ ଗୋଟେ ନୂଆ ମୋହ ଆଣିଦିଏ । ଅଜାଣତରେ କେମିତି ସେ ଏତେ ଖୁସିହୋଇ ଯାଏ ଭାବିପାରେ ନାହିଁ । ବେଳେ ବେଳେ କାମ କରୁ କରୁ ସୁନ୍ଦର ପୃଥିବୀକୁ ଚାହିଁ ଥକ୍‌କା ହୋଇଯାଏ । ଗାଁମୁଣ୍ଡ ଦେଉଳ ପାଖ ହେଲେ ମୁଣ୍ଡିଆ ମାରି ଠାକୁରଙ୍କୁ କହେ, ପ୍ରଭୁ ! ଆମକୁ ତମେ ଏମିତିକି ସୁଖରେ ରଖ, ଆମର ଅଧିକ କିଛି ଲୋଡ଼ା ନାହିଁ । ଆମ ଗାଁ ଲୋକେ ଖୁସି



( ବାଛୁରି ସହ ଗାଁ ମୁଣ୍ଡରେ ଦେବୀ )

ମନରେ ମିଳି ମିଶି ଚଳନ୍ତୁ । ଦୁଃଖ ସୁଖରେ ସମସ୍ତେ ସମସ୍ତଙ୍କୁ ସାହାଯ୍ୟ କରନ୍ତୁ । ଦେବୀର ଚାଲି ଚଳଣିକୁ ଗାଁ ସାରା ଲୋକେ ଧନ୍ୟ ଧନ୍ୟ କରନ୍ତି । ଆଉ ପ୍ରଶଂସା କରନ୍ତି ଦେବୀର ବାପା ବୋଉଙ୍କୁ ।

ଦେବୀ ଘରଠୁ ଦୁଇ ତିନି ଘର ଛାଡ଼ି ମୁକୁନ୍ଦ ନାହାକଙ୍କ ଘର । ଜମି, ବାଡି, ଟଙ୍କା, ସୁନା କେଉଁଥିରେ ଊଣା ନାହିଁ । କେବଳ ତାଙ୍କର ମନଟା ଛୋଟ । ଏତେ ଭଲରେ ଥିଲେ ବି କାହାରିକୁ ହାତ ଟେକିବାକୁ କୁଣ୍ଠିତ । ଝିଅଟିଏ ତାଙ୍କର, ନାଁ ସୁମନା । ସୁମନା ଦେଇ ତ ପାଠ ଶାଠ

କିଛି ହେଲା ନାହିଁ । କିନ୍ତୁ ମୁହଁ ଖରରେ କେହି ବଳି ଯିବେନି ତାକୁ । ଦେବା ବୟସର ହୋଇଥିବାରୁ ଦେବା ଚାଲିଆସେ ସୁମନା ପାଖକୁ ସାଙ୍ଗ ହୋଇ ଖେଳିବା ପାଇଁ । କିନ୍ତୁ ସୁମନା ତାକୁ ଥରକୁ ଥର କଟୁକଥା କହି ଆଘାତ ଦିଏ । ଅସଲ କାରଣ ହେଲା, ଦେବାର ରୂପଗୁଣର ପ୍ରଶଂସା ସେ ଜମା ସହି ପାରେ ନାହିଁ ।

ମଗୁଶିର ମାସ । ଗୁରୁଆଡ଼େ ଲକ୍ଷ୍ମୀ ଠାକୁରାଣୀଙ୍କର ଆଗମନ ପାଇଁ ଆୟୋଜନ । ଘରେ ଘରେ ଲିପା ପୋଛା ଚିତା ଖୋଟି ଦିଆ ଚାଲିଥାଏ । ଦେବା ବାଛୁରି ଦୁଇଟାଙ୍କୁ ଚରେଇବ ବୋଲି ଗାଁମୁଣ୍ଡ ଦଣ୍ଡାକୁ ଗଲା । ବାପା, ଭାଇ ଯିଏ ଯାହା କାମରେ ଲାଗି ପଡ଼ିଲେଣି । ଗାଈ ଛାଡ଼ି ଦେଇ ଗଛ ମୂଳରେ ବସି ଦେବା ଗପ ବହିଟିଏ ପଢ଼ୁଥାଏ । ବହିଟି ତା ପାଇଁ ମାମୁଁ ଯାତରୁ କିଣିଆଣି ଥାଆନ୍ତି । ବହିଟିକୁ ଏକା ପଢ଼ୁଥାଏ ଦେବା । ଠିକ୍ ଏତିକିବେଳେ ସୁମନା ଆସି ହାତରୁ ତା'ର ବହିଟିକୁ ଝିଙ୍କି ନେଲା । ଯେତେ ବିନୟ ଭାବରେ ଦେବା ବହିଟି ମାଗିଲା ସେ ଦେଲା ନାହିଁ । ଓଲଟି ଖତେଇ ହୋଇ କହିଲା, ଓଃ, ଦେଖୁନ, ପେଟକୁ ମୁଠାଏ ଖାଇବାକୁ ନାହିଁ, ବାପା ମୂଲ ଲାଗୁଛି । ଝିଅ ଗପବହି ପଢ଼ି ପଣ୍ଡିତ ହଉଛି । ଦେବାକୁ ଏକଥା ବହୁତ ବାଧିଲା ।

ସେ କହିଲା, ଦେଖ ସୁମନା, ମୋ ବାପାଙ୍କୁ ଅପମାନ କରି କହିବା ତୋର ଉଚିତ ନୁହେଁ । ମୋ ଗପବହି ଫେରାଇଦେ, ନହେଲେ ମଉସାଙ୍କୁ କହି ଦେବି । ଆହୁରି ଜୋରରେ ରାଗି ଉଠିଲା ସୁମନା, ଯା, କାହାକୁ କହିବୁ କହ । ଏହା କହି ବହିଟିକୁ ଚିରି କେତା କେତା କରିଦେଲା । ସତେକି ଦେବା ଦେହରୁ ମାଂସ ଭଣା ଭଣା କରି ଛଡ଼ାଇ ଦେଲା କିଏ । ସେ ଭେଁ ଭେଁ କାନ୍ଦି ଉଠିଲା । କିଛି ସମୟ ପରେ ନିଜକୁ ବୋଧ ଦେଲା । ମନ ଖରାପ ଲାଗିବାରୁ ବାଛୁରି ଦୁହିଁଙ୍କୁ ଅଡ଼େଇ ଘରକୁ ଫେରିଲା । ଦେଖିଲା, ଟିକିଏ ଦୂରରେ ସୁମନା ନରି ମଉସାଙ୍କ ମୁଗ କିଆରିରୁ ପାଚି-ଆଏ ମୁଗଛୁଇଁ ତୋଳି ଧରିଛି । ସୁମନା ଉପରେ ତା'ର ଘୃଣା ଆସିଲା । ସେ ଭାବିଲା ପର ଜିନିଷ ଚୋରି କରିବା କେତେ ପାପ । ଅଥଚ ସୁମନା ବଡ଼ ଘରର ଝିଅ ହୋଇ ଏତେ ଛୋଟକାମ କରୁଛି । ସେଦିନ ସୁମନାକୁ

ସେ କଣ୍ଟ କହିବା ପାଇଁ ଭଲ ମନେକଲା ନାହିଁ । ପୁଣି ଦୁଇଦିନ ପରେ ସୁମନା ଦାସ ମଉସାଙ୍କ ବାଦାମ କିଆରୁ ବାଦାମ ଚୋରି କରିବା ଦେଖି, ଦେବା ସହିପାରିଲା ନାହିଁ । ତା' ପାଖକୁ ଯାଇ ନରମ ଗଳାରେ କହିଲା—ସୁମନା, ଚୋରି କରିବା କେତେ ପାପ ତୁ କ'ଣ ଜାଣିନାହୁଁ ? ଠାକୁର ନିଶ୍ଚେ ତୋ ଉପରେ ରାଗିବେ । ସଦା ଦାସ ମଉସା ଜାଣନ୍ତି, କେତେ ଖରାପ କଥା ହବ କହିଲୁ ? ମୋ ସୁନା ଭଉଣୀଟା ପରା ଏମିତି କାମ ତୁ କର ନାହିଁ ।

ଏକଥା ଶୁଣୁ ଶୁଣୁ ଖିଙ୍କାରି ଉଠିଲା ସୁମନା । ଯା, ଯା, ଭାରି ଭଲଲୋକ ଦେଖଉଛୁ । ନିଜ କଥା ନିଜର ଠିକଣା ନାହିଁ, ପର କଥାରେ ମୁଣ୍ଡ ପୂରଉଛୁ । ଆଉ ଦିନେ ମୋ ସାଙ୍ଗରେ କଥା କହିଲେ ଦେଖିବୁ ।

ପ୍ରକୃତରେ ସେଦିନୁ ସୁମନା ଆଉଙ୍କୁ ଆଉ ଗୁହାଁ ନ ଦେବା । ଆଉ ଦିନେ ଦିପହରେ ଦେବାର ବାପା ଘରକୁ ଖାଇବା ପାଇଁ ଗିବାରୁ ଦେବା ବାବୁଘର ଧାନଖଳା ଜଗି ବସିଥାଏ । ଶୀତୁଆ ପବନ ଧାନକେଣ୍ଡା ଉପରେ ପହଁରି ଯାଉଥାଏ । ଯୁଆଡ଼େ ଗୁହିଁଲେ ପାଚିଲା ଧାନକିଆରି । ହଳଦୀ ବୋଳହେଲା ପରି ସୁନ୍ଦର ଦୃଶ୍ୟ । ସାକ୍ଷାତ ମା' ଲକ୍ଷ୍ମୀଠାକୁରାଣୀ ବିଜେ ହୋଇଛନ୍ତି । ବହୁ ଦୂରରୁ ଚାଷୀଭାଇର ଗୀତ ଭାସି ଆସୁଛି । ଠିକ୍ ଏତିକିବେଳେ କେଉଁଠୁ ବିକଳ ଚିତ୍କାର ଶୁଭିଲା । ଦେବା ଚମକି ପଡ଼ିଲା, କ'ଣ ହେଲା କାହାର ? ଏପଟ ସେପଟ ଗୁହିଁଲା । କେହି କୁଆଡ଼େ ଦିଶୁ ନାହାନ୍ତି । ଖେତୁଆମାନେ ଖାଇବାକୁ ଘରକୁ ବାହୁଡ଼ି ଯାଇଛନ୍ତି । ସେ କଣ୍ଟ ବୁଝି ନପାରି ଆଗକୁ ଦୌଡ଼ିଲା, ପୁଣି ପଛକୁ । ଟିକିଏ ପରେ ବାରି ପାରିଲା ଚିତ୍କାର କେଉଁଠୁ ଆସୁଛି । ଯାଇ ଦେଖେ ତ, ଘାଇମୂଳ ଧାନକିଆରି ପାଖରେ ପେଟେଇ ପଡ଼ିଛି ସୁମନା, ପାଖରେ କେଣ୍ଡିକଟା ଧାନ ପାଚିଆଟିଏ । ଗୋଟାଏ ବଡ଼ ଗାତ ଭିତରେ ହାତ ପୂରାଇ ରଡ଼ି ମାରୁଛି ସୁମନା । କିଛି ବୁଝିବାକୁ ବାକି ରହିଲା ନାହିଁ ଦେବାର । ସେ ସାଙ୍ଗେ ସାଙ୍ଗେ ସୁମନାର ହାତ ଗାତରୁ ଭିଡ଼ିଆଣିଲା । ହାତ ଖଣ୍ଡିଆ ହୋଇ ରକ୍ତ ଝରୁଛି । ତଥାପି ଧାନକେଣ୍ଡାଟି ରହିଛି

ହାତମୁଠା ଭିତରେ । ଲୋଭର ପରିଣାମ କଣ ହୁଏ, ଆଖି ଆଗରେ ଦେଖିଲା ଦେବୀ । ସୁମନାର ବିକଳ ସହି ନପାରି, ସେ ପିନ୍ଧିଥିବା ଲୁଗାରୁ ଖଣ୍ଡେ ଚିରି ତା ହାତରେ ଜୋର୍ କରି ବାନ୍ଧିଦେଲା । ତାପରେ ତାକୁ ଟେକିବାକୁ ଚେଷ୍ଟା କଲା, ପାରିଲା ନାହିଁ । କୁଣ୍ଢେଇ ଧରି ଘୋସାରି ଘୋସାରି କଚ୍ଛୁବାଟ ଆଣିଲା, ତାପରେ ରଡ଼ିକରି ଗାଁ ଲୋକଙ୍କୁ ଡାକିଲା । ଗୃହୁଁ ଗୃହୁଁ ସମସ୍ତେ ରୁଣ୍ଡହୋଇ ପଡ଼ିଲେ, ଡାକ୍ତରଖାନା ନେଇଗଲେ । ଔଷଧ ଇଞ୍ଜେକ୍ସନ ଦେବାରୁ ଚେତା ଆସିଲା ସୁମନାର । ବହୁତ କଷ୍ଟରେ ଭଲ ହେଲା ସୁମନା । ପାଖେ ପାଖେ ତା'ର ଜଗି ରହୁଥାଏ ଦେବୀ । ସୁମନାର ବାପା, ମା' ଓ ଗାଁ ଲୋକେ ପିଲାଟାର ବୁଦ୍ଧିରେ ଅବାକ୍ ହୋଇଗଲେ ।

ସେଦିନ ଯଦି ଠିକ୍ ସମୟରେ ଦେବୀ ସୁମନାକୁ ସାହାଯ୍ୟ କରି ନଥାନ୍ତା, ଗୋଖର ସାପ ବିଷରେ ଘଣ୍ଟାକରେ ସୁମନାର ଜୀବନ ଶେଷ ହୋଇ ଯାଇ ଥାଆନ୍ତା । ଦେବୀର ଏତେ ବଡ଼ ଋଣ କ'ଣ ଦେଇ ଶୁଝି ପାରିବ ସୁମନା ? ନିଜର ଭୁଲ ପାଇଁ ଦେବୀକୁ ବାରମ୍ବାର କ୍ଷମା ମାଗିଲା । ଦେବୀକୁ କୁଣ୍ଢେଇଧରି କାନ୍ଦି କାନ୍ଦି କହିଲା, ସତରେ ଦେବୀ ! ତୁ କେତେ ଭଲ !

ଏତକିରେ ଦେବୀ ମନର ସବୁ ଦୁଃଖ ଧୋଇ ହୋଇଗଲା । ସେ ସୁମନାକୁ କହିଲା, ଏଣିକି ଆମେ ଦୁଇ ଭଉଣୀ ଭଳି ଚଳିବା ।



